# ଧୂସର ଦିଗନ୍ତ

ଉଦୟନାଥ ମହାପାତ୍ର



ପ୍ରାଚୀ ପ୍ରକାଶନ
ଭୁବନେଶ୍ୱର, ନୂଆଦିଲ୍ଲୀ

# ଧୂସର ଦିଗନ୍ତ

ଶ୍ରୀ ଉଦୟନାଥ ମହାପାତ୍ର



ପ୍ରଥମ ସଂସ୍କରଣ ୧୯୯୩

ପ୍ରକାଶକ :

**ପ୍ରାଚୀ ପ୍ରକାଶନ**
୨୨, ସୂର୍ଯ୍ୟକିରଣ ମାର୍କେଟ
ଶହୀଦ ନଗର
ଭୁବନେଶ୍ୱର-୭୫୧୦୦୭

ମୁଦ୍ରଣ :

**ପ୍ରିଣ୍ଟୋ ଗ୍ରାଫିକ୍**
୪୨୯, ଶହୀଦ ନଗର, ଭୁବନେଶ୍ୱର

**ମୂଲ୍ୟ—ଟ ୨୮-୦୦**

# ନିଜକଥା

ବହୁଦିନରୁ କ୍ଷୁଦ୍ର ଗଳ୍ପ ଓ ଉପନ୍ୟାସ ଲେଖି ଆସୁଥିଲେ ବି ପୂର୍ଣ୍ଣାଙ୍ଗ ଉପନ୍ୟାସ ହିସାବରେ ଏହା ମୋଏ ପ୍ରଥମ ଉଦ୍ୟମ । ସାଂପ୍ରତିକ ସାମାଜିକ ସଂକଟ ପରିପ୍ରେକ୍ଷୀରେ ନିତ୍ୟନୈମିତ୍ତିକ ପାରିବାରିକ ଝଡ଼ଝଞ୍ଜା ମଧ୍ୟରୁ ମୋର ସାହିତ୍ୟିକ ସତ୍ତା ଯେତେବେଳେ ନିଜକୁ ମୁକ୍ତ କରିଦିଏ, ସେତେବେଳେ ସେ ହଜିଯାଏ ତା'ଚତୁଃପଟରେ ଘୂରି ବୁଲୁଥିବା ଚରିତ୍ରମାନଙ୍କର ହସକାନ୍ଦଭରା ଜୀବନ ଭିତରେ । ସେଇମାନଙ୍କର ହସକାନ୍ଦଭରା କାହାଣୀକୁ ମୁଁ ଟେକିଧରିଛି ଆପଣମାନଙ୍କ ସମ୍ମୁଖରେ । 'ଧୂସର ଦିଗନ୍ତ' ମୋର ନିଛକ ସାହିତ୍ୟ ସାଧନାର ଅନବଦ୍ୟ ଅବଦାନ ନୁହେଁ, ବରଂ ମୋର ନିକଟତମ ଚରିତ୍ରମାନଙ୍କର ଜୀବନାନୁଭୂତିର ପ୍ରାଣବନ୍ତ ଆଲେଖ୍ୟ ।

ପାଣ୍ଡୁଲିପିଟିକୁ ପଢି ଯେଉଁ ବନ୍ଧୁମାନେ ମତେ ଏହାର ପ୍ରକାଶନ ପାଇଁ ଉତ୍ସାହ ଓ ପ୍ରେରଣା ଦେଇ ଆସିଛନ୍ତି, ସେମାନଙ୍କ ମଧ୍ୟରୁ ପ୍ରଦୀପ ମିଶ୍ର, ଶରତ କୁମାର ଜେନା, ବିଶ୍ୱକଲ୍ୟାଣ ଦାସ, ନିକୁଞ୍ଜ ମହାନ୍ତି, ହୃଷୀକେଶ ମଲ୍ଲିକ ପ୍ରଭୃତି ଅନ୍ୟତମ । ପୁସ୍ତକଟିକୁ ପ୍ରକାଶ କରିବା ଦିଗରେ ମୋର ଅନୁଜ ପ୍ରତିମ 'ଶାଳନ୍ଦୀ' ସଂପାଦକ ଶ୍ରୀ ଧନଞ୍ଜୟ ନାୟକଙ୍କ ସହଯୋଗ ବିଶେଷ ପ୍ରଶଂସନୀୟ । ସମସ୍ତଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ।

**ଉଦୟନାଥ ମହାପାତ୍ର**

ନବ ବସନ୍ତର ଆଗମନୀ ବାର୍ତ୍ତା ସଭିଙ୍କର କର୍ଣ୍ଣକୁହରରେ ପ୍ରବେଶ କରି-ସାରିବଣି । କୋମଳ କିଶଳୟର ସୁନ୍ଦର ଶୋଭା ପ୍ରତ୍ୟେକ ପ୍ରାଣକୁ ଛୁଇଁଗଲାଣି. ହୃଏତ । ରଜନୀଗନ୍ଧାର ତୀବ୍ର ଦଂଶନରେ ପ୍ରତ୍ୟେକ ହୃଏତ ବିମୋହିତ । ଆସନ୍ତା କାଲିର ରଙ୍ଗରସରେ ନିଜକୁ ହଜେଇ ଦେବାର ସ୍ୱପ୍ନରେ ପ୍ରତ୍ୟେକ ବିଭୋର । ଅମିତାର ଆଖିରେ ନିଦ୍ରାର ଛୁଟିକା ଏବେ ସୁଦ୍ଧା ବି ବାକିନି । ନିଶାର ବହଳତା କ୍ରମେ ବଢ଼ି ଚାଲିଛି । ପୁନେଇ ଜହ୍ନର ଧାରେ ଆଲୁଅ ବାତାୟନ ଫାଙ୍କ ଦେଇ ଅମିତାର ବକ୍ଷ ଉପରେ ଏକ କ୍ଷୀଣ ରେଖାପାତ କରୁଛି । କେଉଁ ଏକ ଅଜଣା ପକ୍ଷୀର କରୁଣ ବିଳାପ ଭାସିଆସୁଛି ଅନେକ ଦୂରରୁ । ଆସନ୍ତାକାଲି ହୋଲି ଖେଳ । ହୋଲି ଖେଳର ମାଦକତା ଅନେକ ଦିନରୁ ହରେଇ ସାରିଥିଲେ ବି.... ସେ ଦିନର ସ୍ମୃତିର ପାଖୁଡ଼ା ସବୁ ଏଯାଏ ବି ମଉଳି ଯାଇ ନାହାନ୍ତି ଅମିତାର ମନରୁ । ସେସବୁ ଯେପରି ସତେଜ ଆଉ ଜୀବନ୍ତ ଏବେବି । ଅମିତା ଝରକା ଖୋଲିଲା । ଆଃ ପୁନେଇ ଜହ୍ନର ସୌନ୍ଦର୍ଯ୍ୟ କି ମନଲୋଭା । ଏଇ ଦିନଟି ତା'ର ଚିର ସ୍ମରଣୀୟ । ଶେଖର ସହିତ ବାହାଘର ହେଲାପରେ ସେ ପ୍ରଥମ କରି ପୁରୁଷ ପିଲାଙ୍କ ସହ ସେଇ-ବର୍ଷ ହୋଲି ଖେଳିଥିଲା । ଲାଜକୁଳା ଶେଖର ଦେଖୁଥିଲା—ଅମିତା ଓ ତା'ର ସାଙ୍ଗମାନେ ତାକୁ ରଙ୍ଗରେ ବୁଡ଼ାଇ ଦେଉଥିଲେ । ହୋଲି ଖେଳ ପରେ ଶେଖରକୁ ସାଙ୍ଗରେ ନେଇ ସେ ଘରକୁ ଆସିଥିଲା ଆଉ ତା'ର ମା, ଅରୁଣାଦେବୀ ଖୁସି ମନରେ ଦୁହିଁଙ୍କୁ ମିଠେଇ ଖୁଆଇଥିଲେ । ଆଜି ଶେଖର ଅନେକ ଦୂରରେ । ରଜନୀ ଗନ୍ଧାର ବାସ୍ନା ହଜିଗଲେ ବି ସଭିଙ୍କ ମନରେ ତା' ପ୍ରତି ମୋହ ମାୟା ଅତୁଟ ରହିଯାଏ । ଅତୀତ ଅତୀତରେ ରହିଗଲେ ବି ତା'ର କମ୍ପିତ ଭରା ମୁହୂର୍ତ୍ତଗୁଡ଼ାକ ଜୀବନ୍ତ ହୋଇ ରହିଯାଏ ଆଗାମୀ ଦିନଗୁଡ଼ିକ ପାଇଁ ।

କାଲି ପରି ଲାଗୁଛି । ମାଟ୍ରିକ୍ ପରୀକ୍ଷା ସରିଲା । ସେବର୍ଷ ଇଂରାଜୀ ଆଉ ଗଣିତ ପ୍ରଶ୍ନ ଟିକିଏ ଜଟିଳ ଥିଲା । ତା' ସତ୍ତ୍ୱେ ବି ତା'ର ଶିକ୍ଷୟିତ୍ରୀମାନେ ଭାବିଥିଲେ "ଆଉ କେହି ନ ହେଲେ ବି ଅମିତା ନିଶ୍ଚୟ ପ୍ରଥମ ଶ୍ରେଣୀ ପାଇବ, ସ୍କୁଲର ନାଁ ରଖିବ ।" ସେଇୟା ହେଲା । ମାଟ୍ରିକ୍ ପରୀକ୍ଷା ଫଳ ପ୍ରକାଶ ପାଇଲା । ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା ସେ । ସେଦିନର ଆନନ୍ଦ କହିଲେ ନ ସରେ । ରେଖା ଗାୟତ୍ରୀ, ଝରଣା, ରାଧା ପ୍ରତ୍ୟେକେ ଜଣ ଜଣ କରି ସେମାନଙ୍କୁ ଡାକ ନେଇଥିଲେ ।

ତାଙ୍କ ବାପା, ମା' ଭାଇ ଭଉଣୀମାନଙ୍କଠାରୁ ପ୍ରଶଂସା ଶୁଣି ଶୁଣି ସେ ଖୁସିରେ ଫାଟି ପଡ଼ୁଥିଲା ଯେପରି । ରାଧାର ଭାଇ ସାଧୁବାବୁ ସେତେବେଳକୁ ଇଞ୍ଜିନିୟରିଂ ପାସ୍ କରିସାରିଥାନ୍ତି । ସେଦିନ ରାଧା ତା'ର ଭାଇଙ୍କ ସହିତ ତାକୁ ପରିଚିତ କରେଇ ଦେଲି । ଠିକ୍ ୧୫/୨୦ ଦିନ ପରେ ସାଧୁବାବୁଙ୍କ ସହିତ ତା'ର ବିଭାଘର ସମ୍ପର୍କରେ ଏକ ପ୍ରସ୍ତାବ ଆସିଲା । ଏ ପ୍ରସ୍ତାବରେ ତା'ର ବାପା, ବୋଉ ଖୁବ୍ ଖୁସି ହୋଇ ଯାଇଥିଲେ । ବିନା କଷ୍ଟରେ ଇଞ୍ଜିନିୟର ଜ୍ୱାଇଁଟିଏ ପାଇବେ, ଏଥିରେ ଖୁସି କିଏ ବା ନ ହେବ ! କଥା ପ୍ରସଙ୍ଗରେ ବୋଉ ତାକୁ ଏଇ କଥା କହିଲେ । ସେ ବୋଉ ଆଗରେ ଗୋଡ଼ କଚାଡ଼ି ଏଣୁ ତେଣୁ କେତେ କଥା କହିଗଲା । ତା'ର ଏକାଜିଦ୍ ସେ କଲେଜରେ ପଢ଼ିବ । ତା'ର ପଢ଼ା ନସରିବା ଯାଏ ବିଭାଘର କଥା କେହି ଚିନ୍ତା କରିବେ ନାହିଁ । ସେ ପ୍ରସ୍ତାବ ଯେମିତି ଆସିଥିଲା, ସେମିତି ଫେରିଗଲା । ସେଇଦିନୁ ରାଧା ତାକୁ ଭଲକରି ପଦେ କଥା ବି କହେନି ।

ଅମିତାର ଏକାନ୍ତ ଇଚ୍ଛା ସେ ରେଭେନ୍ସା କଲେଜରେ ପଢ଼ିବ । ହେଲେ କ'ଣ ହେବ, ଠିକ୍ ସମୟରେ ଇଣ୍ଟିମେସନ ପାଇଥିଲେ ବି ସେ ନିରୁପାୟ । ବାପା ରାମବାବୁଙ୍କର ଚାକିରି କେନ୍ଦ୍ରାପଡ଼ାରେ । କେନ୍ଦ୍ରାପଡ଼ା ଏସ୍.ଡି.ଓ ଙ୍କ ଅଫିସରେ ସେ ସାମାନ୍ୟ ଜଣେ କିରାଣି । ଝିଅକୁ କଟକରେ ହଷ୍ଟେଲରେ ରଖାଇ ପଢ଼ାଇବାର ସାମର୍ଥ୍ୟ ତାଙ୍କର ନାହିଁ । ତା' ଛଡ଼ା କଟକରେ ଯଦି କେହି ସମ୍ପର୍କୀୟ ଥାଆନ୍ତେ ତେବେ ତାଙ୍କ ପାଖରେ ଝିଅକୁ ରଖିଥିଲେ କମ୍ ଖର୍ଚ୍ଚରେ ଚଳି ହୋଇଥାନ୍ତା ; ହେଲେ ସେମିତି କିଛି ସୁବିଧା ନଥିଲା । ତେଣୁ ବାଧ ହୋଇ ଅମିତାକୁ କେନ୍ଦ୍ରାପଡ଼ା କଲେଜରେ ହିଁ ନାମ ଲେଖାଇବାକୁ ହେଲା ଆଇ. ଏସ୍. ସି ରେ ।

ବର୍ଷକପରେ ରାମବାବୁଙ୍କର ବଦଳି ହେଲା କଟକ କଲେକ୍ଟରେଟ୍‌କୁ । ଏବେ ରେଭେନ୍ସା କଲେଜରେ ପଢ଼ିବାର ଆଶା ଅମିତାର ପୂରଣ ହେଲା । ରାମବାବୁ ଝିଅକୁ ସେଇ କଲେଜରେ ସବୁ ପ୍ରକାର ବ୍ୟବସ୍ଥା କରିଦେଲେ । ଏବେ ଅମିତା ରେଭେନ୍ସା କଲେଜର ଦ୍ୱିତୀୟ ବାର୍ଷିକ ବିଜ୍ଞାନ ଛାତ୍ରୀ ।

ସୁନ୍ଦରୀ ଅମିତାର ପରିପାଟୀ ଖୁବ୍ ରୁଚିପୂର୍ଣ୍ଣ । ସବୁଜ ଶାଢ଼ୀର ଆବରଣରେ ନିଜର ସୌମ୍ୟ ଅବୟବକୁ ଆକର୍ଷଣୀୟ ଭାବରେ ସଜାଇଥାଏ ସେ । କୃଷ୍ଣ କବରୀର ମୃଦୁ ବାସ୍ନା, ପଲାଶ ଓଠର ଧାରେ ହସ । ପାନପତ୍ର ପରି ମୁହଁରେ ସନ୍ତୁଷ୍ଟ ମୁଗ

ନୟନ ତା'ର ରୂପଶୋଭାକୁ ଦ୍ୱିଗୁଣିତ କରିଦଏ । ଅନନ୍ୟସାଧାରଣ ରୂପମାଧୁରୀର ଅଧିକାରିଣୀ ଅମିତା ଦାସ ଖୁବ୍ ଅଳ୍ପ ଦିନ ମଧ୍ୟରେ କଲେଜ କ୍ୟାମ୍ପସ୍ ଭିତରେ ସମସ୍ତଙ୍କ ଦୃଷ୍ଟିର କେନ୍ଦ୍ରବିନ୍ଦୁ ହୋଇଗଲା । ଏବେ ସମସ୍ତଙ୍କ ମୁଖରେ ସୁଶ୍ରୀ ଅମିତା କଲେଜ କୁଇନ୍ ।

ସନ୍ତ୍ରସ୍ତଚିତ୍ତିଏ ଜାଳଦେଇ ପଢ଼ା ଘରେ ପ୍ରବେଶ କଲା ଅମିତା । ରଫ୍ ଖାତା ଖୋଲିଦେଇ ଖଣ୍ଡେ ଗଣିତ ଉପରେ ଆଖି ପକାଇଲା ସେ । ଆଜି କ୍ଲାସରେ ଏଇ ଗଣିତ ଖଣ୍ଡିକ ପାଇଁ ଶେଖର ଚୌଧୁରୀ ଏବଂ ସାର୍‌ଙ୍କ ମଧ୍ୟରେ ଅନେକ ଯୁକ୍ତିତର୍କ ହେଲା; ଶେଷରେ ଶେଖର ଚୌଧୁରୀର ଯୁକ୍ତିକୁ ସାର୍ ମାନିବାକୁ ବାଧ୍ୟ ହେଲେ । ଅମିତା ଅନେକ ସମୟରେ ଅଭିଭୂତ ହୋଇ ଯାଉଥିଲା ଶେଖରର ଜ୍ଞାନ, ଅସାଧାରଣ ପ୍ରତ୍ୟୁତ୍ପନ୍ନମତିତା ଓ ଅକାଟ୍ୟ ଯୁକ୍ତିରେ ପ୍ରତି କ୍ଷେତ୍ରରେ, ପ୍ରତି କଥାରେ ଶେଖର ବିଚକ୍ଷଣ ବୁଦ୍ଧିମତ୍ତାର ପରିଚୟ ଦେଉଥିଲା । ବଳିଷ୍ଠ ବ୍ୟକ୍ତିତ୍ୱର ଅଧିକାରୀ, ପ୍ରତିଭା ବିମଣ୍ଡିତ ଏଇ ଶେଖର ଚୌଧୁରୀ ଖୁବ୍ କମ ଦିନ ମଧ୍ୟରେ କଲେଜର ଠିକ୍ ତଳ ସ୍ତରରୁ ଉପରସ୍ତର ପର୍ଯ୍ୟନ୍ତ ସମସ୍ତଙ୍କର ଆପଣାର ହୋଇଗଲା ।

ଚୁମ୍ବକ ଲୁହାକୁ ଟାଣିଲା ପରି ଶେଖରର ପ୍ରତିଭା ଅମିତାକୁ ଆକର୍ଷଣ କରୁଥିଲା । ଦିନକୁ ଦିନ ତା' ପ୍ରତି ଅମିତାର ଦୁର୍ବଳତା ପୂର୍ଣ୍ଣିମାଜହ୍ନର ଉଠିଆ ଜୁଆର ଭଳି ବଢ଼ି ବଢ଼ି ଚାଲିଥିଲା ।

ଆରମ୍ଭ ହେଲା ପିକ୍‌ନିକ୍ ପର୍ବ । ଆଇ. ଏସ୍. ସି. କ୍ଲାସର ନେତୃତ୍ୱ ନେଇ-ଥିଲା ବିକାଶ ରାୟ । ନୂଆ ଅନୁଭୂତି ନେଇ ସମସ୍ତେ ବସ୍‌ରେ ବସିଲେ । ବସ୍ ଗଡ଼ି ଚାଲିଲା କର୍ଣ୍ଣିଲେ ନୀଳମାଧବଙ୍କ ଅଭିମୁଖେ । ରାତି ୧୨ଟା । ପିଲାମାନେ ନିଜ ନିଜ ସିଟ୍‌ରେ ବସିବସି ଢୁଳେଇ ପଡ଼ିଲେଣି, ବସ୍ ଖୋର୍ଦ୍ଧା ଟପିଗଲା ପରେ ହଠାତ୍ ଅମିତାର ଆଖିରୁ ତନ୍ଦ୍ରା ଦୂରେଇଗଲା । ସେ ଦେଖିଲା ସମସ୍ତେ ନିଘୋଡ଼ ନିଦରେ ଶୋଇଯାଇଛନ୍ତି ; ଏକମାତ୍ର ଜଣେ ବିନିଦ୍ର ପ୍ରହରୀ ପରି ଜଗି ରହିଛି ସମସ୍ତଙ୍କୁ । ହୁଏତ ଏକ ଅହେତୁକ କାରଣରୁ ଅମିତା ପାଟିରୁ ବାହାରି ଆସିଲା "ସମସ୍ତେ ଶୋଇ ଗଲେଣି । ଆପଣ କାହିଁକି ରାତି ଅନିଦ୍ରା ରହି ଶରୀରକୁ କଷ୍ଟ ଦେଉଛନ୍ତି ?" ଶେଖର ଥରେ ଅମିତା ଆଡ଼କୁ ଚାହିଁ ପୁଣି ଦୃଷ୍ଟି ଫେରାଇ ନେଲା । ଶେଖରର ନୀରବତା ଅନେକ କଷ୍ଟ ଦେଲା ଅମିତାକୁ । ଆଖି ତା'ର ଛଳଛଳେଇ ଆସିଲା । କଲେଜରେ ପିକ୍‌ନିକ୍ ହୁଏ ; ଏଥିରେ ପୁଅ ଝିଅ ଉଭୟେ ଯୋଗ ଦେଇଥା'ନ୍ତି ଫୂର୍ତ୍ତି, ମଉଜ ମଜଲିସ୍ କରିବା ପାଇଁ । ଏହା ନିହାତି ପୁରୁଣା ଆଉ ଧରାବନ୍ଧା ଘଟଣା ହେଲେବି ଏଥର ଅମିତା ନିଜ ଇଚ୍ଛା ବିରୁଦ୍ଧରେ ପିକ୍‌ନିକ୍‌ରେ ଯୋଗ ଦେଇଛି କେବଳ ଜଣଙ୍କ

ପାଇଁ । ଯେତେବେଳେ ବିକାଶ ରାୟ ପ୍ରମୁଖ ଅନ୍ୟ କେତେକ ପିଲା ପିକ୍‌ନିକ୍‌ରେ ଯିବାପାଇଁ ତାଙ୍କୁ ଅନୁରୋଧ କଲେ, ସେତେବେଳେ ସେ ଚତୁରତାର ସହିତ ଚାନ୍ଦା ଦେଇଥିବା ପିଲାମାନଙ୍କର ନାମ ତାଲିକାଟି ଦେଖିଲା; ସେ ଅବାକ୍ ହୋଇଗଲା ଯେ ଶେଖର ଚୌଧୁରୀର ନାମ ଶୀର୍ଷ ସ୍ଥାନରେ ଅଛି । ମନେ ମନେ ଅନେକ ଖୁସି ହେଲା ସେ । ଏବଂ ପିକ୍‌ନିକ୍‌ରେ ଯିବାପାଇଁ ସମ୍ମତି ଜଣେଇ ତାଲିକାରେ ନିଜର ନାମଟି ଲେଖିଲା । ସେଇ ସହାନୁଭୂତିର ଉତ୍ତର ଟିକିଏ ସେ ଆଜି ପାଉଛି ଶେଖର ଠାରୁ । ମନ ତା'ର ଏକ ଅସ୍ପଷ୍ଟ ରାଗିଣୀ ଭଳି ଚିତ୍କାର କରି ଉଠୁଥିଲା ।

ଭୋର ପାଞ୍ଚଟା ବେଳେ ବସ୍ ନୀଳମାଧବଙ୍କ ମନ୍ଦିରର ପାଦ ସ୍ପର୍ଶ କଲା । ତତ୍ତ୍ୱାବଧାରକଙ୍କ ନିର୍ଦ୍ଦେଶ କ୍ରମେ ପିଲାମାନେ ବସ୍‌ରୁ ଓହ୍ଲାଇ ପଡ଼ିଲେ । ନୀଳ-ମାଧବଙ୍କୁ ଦର୍ଶନ କରିବାର ଆକାଂକ୍ଷା ସମସ୍ତଙ୍କ ପ୍ରାଣକୁ ପୁଲକିତ କରି ଦେଉଥାଏ । ଏକ ନୂତନ ଅନୁଭୂତିରେ ପ୍ରତ୍ୟେକେ ଯେପରି ବିଭୋର । ସମସ୍ତଙ୍କୁ ନିଜନିଜର ନିତ୍ୟକର୍ମ ଶେଷ କରିବାର ସଙ୍କେତ ଦିଆଗଲା । ଦୀପାବଳୀ ସରିଯାଇଥାଏ ଆକାଶ ସମ୍ପୂର୍ଣ୍ଣ ନିର୍ମଳ, ତଥାପି ମହାନଦୀ ସ୍ରୋତର ପ୍ରଖରତା କମି ନଥାଏ । ଶୀତରେ ଦେହ କେମିତି ଜଡ଼ସଡ଼ ହୋଇଯାଉଥାଏ । ପିଲାମାନେ ପ୍ରାତଃସ୍ନାନ ନିମନ୍ତେ ରୁଣ୍ଡ ହୋଇଗଲେ ମହାନଦୀ କୂଳରେ । ହଠାତ୍ ଚିତ୍କାର କରି ଉଠିଲା ସ୍ମିତା "ଅମିତା ଭାସିଗଲା, ତାକୁ ଉଦ୍ଧାର କର ।" ଅନେକ ପଛରେ ଥିଲେବି ଶେଖରକୁ ତାହା କିପରି ଶ୍ରୁତିକଟୁ ମନେ ହେଲା । ଆଖିପିଛୁଳାକେ ମହାନଦୀର ପ୍ରଶାନ୍ତ ବକ୍ଷରେ ନିଜକୁ ମିଶାଇ ଦେଲା ସେ । ଅନେକ ପରିଶ୍ରମ ପରେ ଅମିତାର ଅଚେତ ଶରୀରକୁ ଧରି ସେ କୂଳରେ ପହଞ୍ଚିଲା ସମସ୍ତଙ୍କ ମନରୁ ବିଷାଦର କାଳିମା ଦୂରେଇ ଦେଇ । ଅମିତାର ଚେତା ଫେରିଲା ପରେ ସେ ଦେଖିଲା ତା' ଚାରିପଟେ ଘେରି ରହିଛନ୍ତି ପିକ୍‌ନିକ୍‌ର ତତ୍ତ୍ୱାବଧାରକ, ସ୍ମିତା, ଶେଖର ଚୌଧୁରୀ ଓ ଅନ୍ୟମାନେ । ସେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲା ଯେ ଏତେବଡ଼ ଦୁର୍ଘଟଣାରୁ ସେ ରକ୍ଷା ପାଇଲା କିପରି ? ଶେଖର ଟିଫିନ୍ ପୁଡ଼ିଆଟି ଅମିତା ହାତକୁ ବଢ଼ାଇ ଦେଇ ଚାଲିଗଲା । ପିକ୍‌ନିକ୍‌କୁ ପ୍ରାଣଭରି ଉପଭୋଗ କରିବାକୁ ଚାଲିଗଲେ ଅନ୍ୟମାନେ । ସ୍ମିତାଠାରୁ ସବୁ ଶୁଣିଲା ପରେ ତା' ନିର୍ଜୀବ ଆଖିରୁ ଗଡ଼ି ପଡ଼ିଲା ଦୁଇ ଟୋପା ଲୁହ । ଏଇ ଶେଖର ଚୌଧୁରୀ ନିଜ ଜୀବନକୁ ବିପନ୍ନ କରି ଯେ ମରଣ ମୁହଁରୁ ଛଡ଼ାଇ ଆଣିଛନ୍ତି । ତାଙ୍କର ପାଇଁ ଏଇ ପିକ୍‌ନିକ୍ ପାର୍ଟିର ସେ ଆଜି ଜଣେ ସଦସ୍ୟା ।

ତା'ର ମନର ପରଦା ଧୀରେ ଧୀରେ ଅପସରି ଯାଉଥିଲା । ଶେଖର ଚୌଧୁରୀର ସୌମ୍ୟ, ସୁନ୍ଦର ମୂର୍ତ୍ତି ତା'ଆଖି ଆଗରେ ନାଚି ଯାଉଥିଲା । ସେ କେମିତି ଦୁର୍ବଳତା ବୋଧ କରୁଥିଲା । ଶେଖର ପ୍ରତି ତା'ର ମୋହ ଯେପରି ବଢ଼ିଯାଉଥିଲା ।

ତା' ମନର ସାଇତା ପଞ୍ଜୁରୀ ଭିତରେ ଶେଖର ଆବଦ୍ଧ ହୋଇ ରହି ଯା'ନ୍ତା କି!
ଭାବି ପାରୁନ୍ଥି ଅମିତା ।

ପିକ୍‌ନିକ୍ ପାର୍ଟି ଫେରିଲା କଟକ । ରାତି ୧୦ଟା । ଅମିତାର ଶୁଖିଲା ମୁହଁକୁ ଦେଖି ଅରୁଣା ଦେବୀ କ'ଣ କହିବେ କହିବେ ଭାବି କିଛି କହି ପାରିଲେନି । ବୋଉକୁ ଖାଇବାକୁ ମନା କରିଦେଇ ଅମିତା କ୍ଳାନ୍ତ ଶରୀରକୁ ଟିକିଏ ବିଶ୍ରାମ ଦେବା ପାଇଁ ପଢ଼ା ଘରକୁ ଚାଲିଗଲା । ବେଡ୍ ଉପରେ ଅବଶ ଶରୀରକୁ ଲୋଟାଇ ଦେଇ ସେ ଭାବି ଯାଉଥିଲା ଆଜି ଦିନର ଘଟଣାଗୁଡ଼ିକୁ ଯାହାକୁ ସେ ପଛରେ ପକାଇ ଆସିଛି ଅନେକ ଯୋଜନ ଦୂରରେ । ନରମ ଆଖି ପରଦା ଦୁଇଟି ଧୀରେ ଧୀରେ ମୁଦି ହୋଇ ଆସୁଥିଲା ବହଳ ନିଦରେ । ସବୁ ଶୁନ୍‌ଶାନ୍ ।

ହଠାତ୍ ଅମିତା କହିଁ କହିଁ ହୋଇ କାନ୍ଦି ଉଠିଲା । ପଢ଼ା ଘରର ଫାଙ୍କା ଦରଜା ଦେଇ କାନ୍ଦିଲାହସ୍ୱ ଅରୁଣା ଦେବୀଙ୍କ କାନରେ ପ୍ରତିଧ୍ୱନିତ ହେଲା ମାତ୍ରେ ନିଦ ତାଙ୍କର ଚାଉଁକିନା ଭାଙ୍ଗିଗଲା । ନିଦବାଉଳା ଅବସ୍ଥାରେ ସେ ଧାଇଁ ଆସିଲେ ଝିଅ ପାଖକୁ । ବେଡ୍ ଲାଇଟ୍ ଜଳୁଛି ; ଅମିତା ବସି କାନ୍ଦୁଛି । ଅରୁଣାଦେବୀ ଧୀରେ ହଲାଇ ଦେଲେ, ପ୍ରକୃତିସ୍ଥ ହେଲା ସେ । ଦେହ ତା'ର ଝାଳରେ ଏକାବେଳକେ ଓଦା ହୋଇଯାଇଥିଲା । ଟେବୁଲ ଘଣ୍ଟା ରାତି ୬ଟାର ସଙ୍କେତ ଦେଉଥିଲା । ଝିଅ ପାଖରେ ବସିପଡ଼ି ପଚାରିଲେ ଅରୁଣା ଦେବୀ, "ତୋ'ର କ'ଣ ହେଲା କି ମା' ? ଏମିତି କାନ୍ଦୁଛୁ ଯେ କ'ଣ ଡରିଲୁ କି ? ପିକ୍‌ନିକ୍‌ରୁ ଫେରିଲୁ । ମୁଁ ଠିକ୍ ଲକ୍ଷ୍ୟ କରିଛି, ତୋ ମୁହଁରେ ସରସତା ନାହିଁ । କ'ଣ ହୋଇଛି ତୋ'ର ? କିଏ କ'ଣ କହିଛି ? ଏମିତି ଅନେକ ପ୍ରଶ୍ନ ପଚାରି ଯାଉଥିଲେ ଅରୁଣା ଦେବୀ । ମନ ତାଙ୍କର ଗୋଳେଇ ଘାଣ୍ଟି ହେଉଥିଲା ଝିଅ ପାଇଁ । ଏକୋଇର ବଳା ଏଇ ଅମିତା ତାଙ୍କର ଆଶାର ଦୀପାଳୀ; ସେଇ ପୁଅ, ସେଇ ଝିଅ ।

ବୋଉ କୋଳରେ ମୁଣ୍ଡ ଗୁଞ୍ଜି କାନ୍ଦି ଉଠିଲା ଅମିତା । ତା' ମୁଣ୍ଡ ଆଉଁସି ଆଉଁସି ଅରୁଣା ଦେବୀ କହିଲେ, "ମୁଁ ପରା ତୋ' ମା' ତୋ'ର ଭଲ ମନ୍ଦ ମୋତେ କହିବୁନି ତ ଆଉ କାହାକୁ କହିବୁ ?" ଖଟ ତଳୁ ପାଣି ଢାଳ ଆଣି ତା' ମୁହଁରେ ଟିକିଏ ପାଣି ମାରିଦେଲେ ଅରୁଣା ଦେବୀ, ସେ ଦେଖିଲେ ଅମିତା ଖୁବ୍ ଭୟ ପାଇ ଯାଇଛି, ଥର ଉଠୁଛି ତା'ର ସର୍ବାଙ୍ଗ ।

—ଭୟଙ୍କର ସ୍ୱପ୍ନ ଦେଖି ମୁଁ ଡରିଗଲି ବୋଉ । କାଲି ପିକ୍‌ନିକ୍‌ରେ ଯେଉଁ ଦୁର୍ଘଟଣା ଘଟିଲା, ସେଇ ସବୁକୁ ପୁଣି ଥରେ ସ୍ୱପ୍ନରେ ଦେଖି ଭାବିଲି ମୋ'ର ଜୀବନ ଦୀପ ହୁଏତ ଲିଭିଯିବ ଆଉ କେତୋଟି ମୁହୂର୍ତ୍ତ ପରେ ।

ଅରୁଣାଦେବୀ ଆଶ୍ଚର୍ଯ୍ୟ ହୋଇ ଶଙ୍କାଜଡ଼ିତ କଣ୍ଠରେ କହିଲେ— କି ଦୁର୍ଘଟଣା ? ତୁ ତ ମୋତେ କିଛି କହିନୁ ।

—କାଲି ନୀଳମାଧବଙ୍କ ପାଖରେ ପହଞ୍ଚିଲା ବେଳକୁ ସକାଳ ହୋଇ ଯାଇଥିଲା । ସଅଳ ସଅଳ ନିତ୍ୟକର୍ମ ସାରିବା ପାଇଁ ଆମ୍ଭେମାନେ ତରତର ହୋଇ ବାହାରିଗଲୁ । ନୀଳମାଧବଙ୍କ ବେଢ଼ାକୁ ସ୍ପର୍ଶ କରି ବହି ଯାଇଛି ମହାନଦୀ । ବେଢ଼ାକୁ ଲାଗି କେତେଗୁଡ଼ିଏ ଛୋଟ ଛୋଟ ପଥର ଖଣ୍ଡ ; ପଥର ଖଣ୍ଡମାନଙ୍କର ଫାଙ୍କ ଦେଇ ଅଙ୍କା ବଙ୍କା ହୋଇ ବହି ଯାଉଛି ନଈ ପାଣି । ସୁମିତା ଆଉ ମୁଁ ସେଇ ପଥର ଉପରେ ବ୍ରସ ଧରି ଦାନ୍ତ ଘସିବା ପାଇଁ ବସିଗଲୁ । ଦାନ୍ତ ଘସି ସାରି ମୁଁ ଉଠିପଡ଼ିଲି ଶାଢ଼ୀର ପଣତ ରହିଗଲା ମୋ ପାଦ ତଳେ । ଶରୀରର ଭାରସାମ୍ୟ ରକ୍ଷା କରି ନପାରି ମୁଁ ପାଣିକୁ ଖସି ପଡ଼ିଲି । ନଦୀର ପ୍ରଖର ସ୍ରୋତ ମୋତେ ଅବାଧରେ ଭସାଇ ନେଲା । ତା' ପରେ ମୁଁ ଆଉ କିଛି ଜାଣେନି । ଦିନ ୧ଟା ବେଳକୁ ମୋର ଚେତା ଫେରିଲା ; ସୁମିତା ଠାରୁ ସବୁ ଶୁଣିଲି ।

ସ୍ରୋତରେ ଭାସି ଯାଇ ଅସାହାଯ୍ୟ ଭାବେ ବୁଡ଼ି ଯାଉଥିଲାବେଳେ ନିଜ ଜୀବନକୁ ବିପନ୍ନ କରି ମୋତେ କୂଳକୁ ଉଠାଇ ଆଣିଥିଲା ଆମ କ୍ଲାସର ଶେଖର ଚୌଧୁରୀ । ନହେଲେ ଆଜି ତୋତେ ଦେଖିବାକୁ ମୁଁ ଏଠି ନଥାନ୍ତି ।

ଅରୁଣା ଦେବୀଙ୍କ ଆଖି ଆର୍ଦ୍ର ହୋଇ ଆସିଲା । କ'ଣ କହିବାକୁ ଯାଇ ସେ କହି ପାରିଲେନି । ଝିଅକୁ କୋଳରେ ଚାପିଧରି ଦି ଟୋପା ତତଲା ଲୁହ ନିଗାଡ଼ି ଦେଲେ । ମନେମନେ ନୀଳମାଧବଙ୍କୁ ପ୍ରଣତି ଜଣାଇଲେ—ଏହିପରି ଅଘଟଣ ତାଙ୍କ ପାଇଁ କେବେ ନଆସୁ ।

ରବିବାରର ଶୀତୁଆ ସକାଳ । ଘର ଅଗଣାରେ ଖରା ପଡ଼ିଲାଣି । ଖରାର ତେଜ ସେତେ ଟାଣ ହୋଇନଥିଲେ ବି ଅରୁଣା ଦେବୀ ଖରା ପୁଇଁବାକୁ ବସି-ଯାଇଛନ୍ତି । ପ୍ରଜାତନ୍ତ୍ର କାଗଜଟି ତାଙ୍କ ଆଗରେ ଖେଳେଇ ହୋଇ ପଡ଼ିଛି । ରଘୁଆ ଚା' କପଟି ତାଙ୍କ ହାତକୁ ବଢ଼ାଇଦେଇ ଚାଲିଯାଉଥିଲା । ଅରୁଣାଦେବୀ ପଛରୁ ଡାକି କହିଲେ, "ଏ ରଘୁ କାଗଜ ନେଇ ବାବୁଙ୍କୁ ଦେ ।" ରଘୁଆ କହିଲା, ବାବୁ ବାହାରକୁ ଗଲେଣି । କହିଯାଇଛନ୍ତି ତାଙ୍କର ଫେରୁ ଫେରୁ ଟିକିଏ ଡେରି ହେବ ।

ରଘୁଆ ଚାଲିଗଲା । ଅମିତା ନିତ୍ୟକର୍ମ ଶେଷ କରି ତାନ୍‌ପୁରାରେ ସ୍ୱର ମିଳାଉଥିଲା । ହଠାତ୍ କଲିଂବେଲ ବାଜି ଉଠିଲା । ରଘୁଆ ଦରଜା ଖୋଲିଦେଇ କିଛି ସମୟପରେ ଫେରିଆସି କହିଲା, ''ମା' ଦୁଇଜଣ ଲୋକ ବାବୁଙ୍କୁ ଖୋଜୁଛନ୍ତି, ଡାକି ଦେବି ? ନାହିଁ ମୁଁ ଯାଉଛି ଅରୁଣା ଦେବୀ ଉଠିଗଲେ । ଦୁଇଜଣ ଯୁବକ ଏକସଙ୍ଗେ ନମସ୍କାର କଲେ ।

—କାହାକୁ ଖୋଜୁଛନ୍ତି ?

—ମଉସା ନାହାନ୍ତି କି ?

—ନା' ସେ ସକାଳୁ ସକାଳୁ କେଉଁଆଡ଼େ ଚାଲିଗଲେଣି । ଫେରୁ ଫେରୁ ବୋଧହୁଏ ଟିକିଏ ଡେରିହେବ । ଆପଣ କେଉଁଠୁ ଆସିଥିଲେ ?

—ମାଉସୀ ! ମୁଁ ରେଭେନ୍‌ସା କଲେଜର ଡ୍ରାମାଟିକ ସେକ୍ରେଟାରୀ ଅଞ୍ଜନ ମିଶ୍ର ଏବଂ ଏ ମୋର ବନ୍ଧୁ ସନ୍ଦୀପ ମହାପାତ୍ର । କଲେଜ ଡ୍ରାମା ସମ୍ବନ୍ଧରେ ଆମେ ଅମିତା ପାଖକୁ ଆସିଥିଲୁ ।

—ତେବେ ବସନ୍ତୁ । ମୁଁ ତାକୁ ଡାକି ଦେଉଛି, କିଛି ସମୟ ପରେ ହସହସ ମୁହଁରେ ସେଠି ପହଞ୍ଚିଲା ଅମିତା ।

—ନମସ୍ତେ ଅଞ୍ଜନ ବାବୁ । ମୋତେ ଖୋଜୁଥିଲେ ?

—ହଁ । ଗୋଟେ ଶ୍ରେଷ୍ଠ ଅନୁରୋଧ ନେଇ ଆସିଛୁ । ଆଶା ଫେରାଇ ଦେବନି । ଆନୁଆଲ ଡ୍ରାମାରେ ହିରୋଇନ୍ ଭୂମିକା ତମକୁ ଦେବାପାଇଁ ଆମେ ସ୍ଥିର କରିଛୁ ।

ଅମିତା ଅଣମଣ ହୋଇ କିଛି କହିବାକୁ ଉପକ୍ରମ କରୁକରୁ ଅଞ୍ଜନ ପୁଣି କହିଲା—ଏ ବର୍ଷ ଆମେ 'ଶକୁନ୍ତଳା' ବହି ମଞ୍ଚସ୍ଥ କରୁଛୁ । ନାଟକଟିର ସଫଳତା ଅନେକାଂଶରେ ଶକୁନ୍ତଳା ଚରିତ୍ରର ଦକ୍ଷ ଅଭିନୟ ଉପରେ ନିର୍ଭର କରୁଛି । ଏ ଭୂମିକା ପାଇଁ ଆମେ ଅନେକ ଦରଖାସ୍ତ ପାଇଥିଲୁ । କିନ୍ତୁ କେହି ସେମାନଙ୍କ ମଧ୍ୟରୁ ଯୋଗ୍ୟ ବିବେଚିତ ହେଲେନାହିଁ । ଏ ସବୁ ଭିତରେ ଆମେ ଭାବିଥିଲୁ ତୁମ ଦରଖାସ୍ତ ବି ଥିବ । ତେଣୁ ହିରୋଇନ୍ ବାଛିବାରେ ଆମେ ସେତେଟା ଅସୁବିଧାର ସମ୍ମୁଖୀନ ହେବୁନାହିଁ । ହେଲେ ତୁମେ କଣ ତାହା କଲ ! ଆମକୁ ହଇରାଣ କରି ପୁଣି ଏତେବାଟ ଟାଣିଲ । ହିରୋ ଭୂମିକା ପାଇଁ ତୁମ ଶ୍ରେଣୀର ଦକ୍ଷ ଅଭିନେତା

ଶେଖର ଚୌଧୁରୀଙ୍କୁ ଏକ ପ୍ରକାର ମନୋନୀତ କରାଯାଇଛି । ତୁମେ ସମ୍ମତହେଲେ ଏ ବର୍ଷ ଡ୍ରାମା ଖୁବ୍ ସୁନ୍ଦର ହୁଅନ୍ତା''—ଏତିକ କହି ହାସ୍ୟ ଅଭିନେତା ଅଞ୍ଜନ ମିଶ୍ର ନୀରବ ହେଲେ ।

—ଆପଣଙ୍କ ଡ୍ରାମାରେ ଭାଗ ନେବାପାଇଁ ମୋର ଆପତ୍ତି ନାହିଁ । ହେଲେ ଏଥିପାଇଁ ବାପାଙ୍କର ଅନୁମତି ଏକାନ୍ତ ଅପରିହାର୍ଯ୍ୟ । ମୁଁ ତାଙ୍କୁ ଏ ସମ୍ପର୍କରେ କିଛି କହି ପାରିବି ନାହିଁ ।

—ମା' ! ମୋତେ ପଚାରିବା ଦରକାର ନାହିଁ । ତୋର ପ୍ରତ୍ୟେକ କାମପାଇଁ ମୋର ସ୍ୱୀକୃତି ରହିଛି—କହି କହି ଭିତରକୁ ପଶି ଆସିଲେ ରାମବାବୁ

—ବାପା !

—ହଁ ମା ତୋ କଥା ମୋ କାନରେ ଠିକଏ ବାଜିଛି

ଅମିତାର ଭାବନା ଲମ୍ବି ଯାଉଥିଲା ଅନେକ ଦୂର । ଶେଖର ଚୌଧୁରୀ ଦୁଷ୍ମନ୍ତ ଭୂମିକାରେ । ଦୁଷ୍ମନ୍ତ-ଶକୁନ୍ତଳା; ଆଦ୍ୟ ଦେଖା, ଅଙ୍ଗୀକାର, ବିବାହ, ବିଚ୍ଛେଦ, ଅଭିଶାପ, ତିରସ୍କାର—ଓଃ କି କଷ୍ଟ ! ଅସ୍ପଷ୍ଟ ସ୍ୱରରେ ବାହାରି ଆସିଲା କଣ୍ଠରୁ ।

—ତେବେ ଆମେ ଆସୁଛୁ !

—ଉଁ· ହଁ ଆସନ୍ତୁ ! ପ୍ରକୃତିସ୍ଥ ହେଲା ଅମିତା ।

ସଂଧ୍ୟା ୬ଟା । ଆମନ୍ତ୍ରିତ ଅତିଥିମାନେ ଉପସ୍ଥିତ ହେଲେଣି । ଅଡ଼ିଟୋରିୟମରେ ଧୀରେ ଧୀରେ ଗହଳି ଜମିଲାଣି । ସ୍କ୍ରିନ୍ ଅପସରି ଗଲା, ଶକୁନ ପକ୍ଷୀ କୋଳରେ ଶିଶୁ ଶକୁନ୍ତଳା । କଣ୍ୱମୁନି ତାଙ୍କୁ ଆଶ୍ରମରେ ଲାଳନ ପାଳନ କଲେ । ଚନ୍ଦ୍ରକଳା ପରି ଦିନକୁ ଦିନ ବଢ଼ିବାକୁ ଲାଗିଲେ ଶକୁନ୍ତଳା । ଏବେ ସେ ଷୋଡ଼ଶୀ । ବାଲ୍ୟ ଚପଳତା ଲୁଚିଗଲାଣି, ପ୍ରଗଲ୍‌ଭତା ହଜି ଗଲାଣି । ଏବେ ଆସିଛି ସ୍ୱପ୍ନ ଦେଖିବାର ବେଳ, ହେନା, ମଲ୍ଲୀର ସୁରଭିରେ ହଜି ଯିବାର ବେଳ, ଦେହମନ ଅହେତୁକ ଆଶଙ୍କାରେ ପୁଲକିତ ହୋଇ ଉଠୁଛି ଯେପରି । ମନ ଗୁହାରୁଛି ଡେଣା ମେଲି ଉଡ଼ିଯିବା ପାଇଁ ସାତଦରିଆ ସେପାରିକୁ । ବନ ବିହାରରେ କୁସୁମ

ଗମନ । ସାର୍ଥୀରେ ତାଙ୍କର ଆଶ୍ରମ ଲଳନାଗଣ । କାନନର ଉପକଣ୍ଠରେ ଏକ ତରୁ ଛାୟା ତଳେ ଅର୍ଦ୍ଧଶାୟିତ ବୀର ପୁଙ୍ଗବ ଯୁବରାଜ ଦୁଷ୍ମନ୍ତ । ଚାରି ଚକ୍ଷୁର ହେଲା ଅପୂର୍ବ ମିଳନ । ଦୁଷ୍ମନ୍ତ, ଶକୁନ୍ତଳାଙ୍କର ହୃଦୟସ୍ଥ ବନ୍ଧନସ୍ତ ଏବଂ ପରିଣୟ । ଶକୁନ୍ତଳାଙ୍କୁ ଦୁଷ୍ମନ୍ତଙ୍କର ଅଙ୍ଗୁରୀୟ ପ୍ରଦାନ । ଅନେକ ପ୍ରତିଶ୍ରୁତି, ଶାନ୍ତ୍ୱନା, ଆଶ୍ୱାସନା ଏବଂ ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ ।

ଶକୁନ୍ତଳାଙ୍କ ଶରୀରରେ ମାତୃତ୍ୱର ଲକ୍ଷଣ । ଦୁଷ୍ମନ୍ତଙ୍କ ଚିନ୍ତାରେ ଶକୁନ୍ତଳା ଶଯ୍ୟାଶାୟୀ । ଦୁର୍ବାସାଙ୍କ ଅଭିଶାପରେ ଦୁଷ୍ମନ୍ତଙ୍କ ଦ୍ୱାରା ସେ ଅପମାନିତା, ଲାଞ୍ଛିତା ।

ଅମିତାର ବାପା, ବୋଉଙ୍କ ଆଖିରେ ଲୁହ । ଅଳିଅଳି କନ୍ୟା ତାଙ୍କର ଆଜି ନିର୍ଯ୍ୟାତିତା, ଭୂଲୁଣ୍ଠିତା ।

ପଢ଼ା ଘରେ ଶୋଇ ଯାଇଛି ଅମିତା । ଦେହରେ ଅସୁମାରି ଅଳସ, ମୁହଁରେ ଆତ୍ମତୃପ୍ତିର ଲକ୍ଷଣ । ପଶିଆସିଲେ ମା' ଅରୁଣା ଦେବୀ । ଉଲ୍ ଚାଦରଟି ଘୋଡ଼ାଇ ଦେଲେ ଝିଅକୁ । ମଥାରେ ଚୁମାଟିଏ ଦେଇ ବସି ପଡ଼ିଲେ ଝିଅ ପାଖରେ । ଏଇ ତାଙ୍କ ଆଦରର ଅମି; ଅମିତା । କେତେ କଷ୍ଟରେ ସେ ତାକୁ ବଢ଼ାଇ ଏଡ଼ୁଟିଏ କରିଛନ୍ତି । ଅମିତା ଯେତେବେଳେ ୨/୩ ବର୍ଷର ହୋଇଥିଲା ତାକୁ ଗୋଟେ କାଳିଆ ମାରଣା ଗାଈ ଗୁଡ଼େଇ ଗୁଡ଼େଇ ମାରିଥିଲା । ସେତେବେଳେ ସେ ରାହା ଧରି କାନ୍ଦି ଉଠିଲା ; ଅନେକ ସମୟ ଯାଏ ତା'ର ଚେତା ଫେରି ନଥିଲା । ତାକୁ ମେଡ଼ିକାଲ ନିଆଗଲା । ଅରୁଣା ଦେବୀ କାନ୍ଦି କାନ୍ଦି ଆର୍ତ୍ତତ୍ରାଣଲମଣିଙ୍କୁ ଝିଅକୁ ଫେରାଇ ଦେବା ପାଇଁ ଗୁହାରି ଜଣାଇଥିଲେ । ତାଙ୍କର ପ୍ରାର୍ଥନା ଭୋଳାନାଥ ଶୁଣିଲେ । ଅରୁଣା ଦେବୀ ଅମିତାକୁ ଫେରି ପାଇଲେ । ସେଇଦିନୁ ସେ କେଉଁଆଡ଼େ ଛାଡ଼ନ୍ତିନି ।

ସେ ଆଜି ବଡ଼ ହୋଇଛି । ବାପା, ମା'ଙ୍କର ଗର୍ବ ତା'ରି ପାଇଁ । ସତରେ ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ଚିହ୍ନିଲେ ତ ? ଅମି ତାଙ୍କର ପ୍ରତାରିତା ହେବନି ତ ? ଅରୁଣା ଦେବୀଙ୍କର ଭାବନା ଲମ୍ବି ଯାଉଥିଲା ଦୂରକୁ ଦୂରକୁ । ଆଖିରୁ ଲୁହ ପୋଛିଲେ ସେ ।

ସ୍ମିତା ଅମିତାର ବାନ୍ଧବୀ । ଅନେକ ପ୍ରଗଳ୍‌ଭା । ଲାଜ ତା'ର ଜାତକରେ ବୋଧହୁଏ ନାହିଁ । ଅନେକ ସାହାସୀ, ସମସ୍ତଙ୍କ ଠିକ୍ ସମୟରେ ଜବାବ ଦେବା

ତା'ର ଏକ ଅଭ୍ୟାସ । କୌଣସି ଘଟଣାକୁ ଭ୍ରୁକ୍ଷେପ କରେନା ସ୍ମିତା । ଅମିତାର ଶ୍ରେଣୀ ସାଙ୍ଗ । ଉଦ୍ଭିଦ ବିଜ୍ଞାନ ସ୍ନାତକରେ ସେ ତୃତୀୟ ବାର୍ଷିକ ଛାତ୍ରୀ ।

ଶେଖର ସ୍ମିତା ଏକା କଲେଜରେ ରହି ଆସୁଛନ୍ତି । ଅନେକ ସମୟରେ ସ୍ମିତା ଶେଖରଠାରୁ ପାଠ ବୁଝିବା ପାଇଁ ଯାଏ । ଶେଖର ପାଖରେ ସେ ଅନେକ ସମୟରେ ଖୋଲା । ସେ କ'ଣ ଖାଇଲା, କେଉଁଠି ମୁହଁ ଧୋଇଲା କାହାକୁ କେତେବେଳେ କ'ଣ କହିଲା ସବୁ କଥା ଶେଖରକୁ କହିପକାଏ । ଶେଖର ଯଦି ବିରକ୍ତ ହୁଏ ସେ ଥଟ୍ଟା କରି ପଳାଇଯାଏ ।

କେବେ ହଠାତ୍ ଶେଖରର ପଢ଼ାଘରେ ପଶିଯାଇ ସ୍ମିତା କହିପକାଏ— ବୁଝିଲ ଶେଖର ଆଜି ଗୋଟେ ଇଣ୍ଟରଭିଉ ଦେଲି ଯେ, ସେଇଟା ସେତେ ଭଲ ହେଲାନି ।

ଶେଖର ସଙ୍ଗେ ସଙ୍ଗେ ପଚାରିଦିଏ,—ଖରାପ ହେଲା କାହିଁକି ? ମନ ତମର କେଉଁଆଡ଼େ ଥିଲା କି ?

"ମନଟା ଠିକଏ ବାଳିବାଲେଇ ଉଠିଲା" ହସି ହସି କହିପକାଏ ସ୍ମିତା । କେବେ କେବେ ସେ କହେ, "ଶେଖର ! ଆଜି ଗୋଟେ ଏନ୍‌ଗେଜମେଣ୍ଟ ଥିଲା, ହେଲେ କ'ଣ ହେବ ? ବର ତ ଯାହା ହୋଇଥିବ ଦୂରର କଥା, ତାଙ୍କ ତରଫରୁ ଯେଉଁମାନେ ଆସିଥିଲେ ସେମାନେ ବି ମୋ ମନକୁ ଗଲେନି ।" ଏତିକି କହି ହସି ହସି ଗଡ଼ିଯାଏ ସ୍ମିତା ।

ଗଣିତ ଅନର୍ସ କ୍ଲାସକୁ ପଶିଆସିଲେ ପ୍ରଫେସର ଓଙ୍କାର ମୂର୍ତ୍ତି । ପ୍ରଫେସର ମୂର୍ତ୍ତି ଅତି ଅମାୟିକ, ଖୁବ୍ ସ୍ନେହୀ । ତାଙ୍କ ଛାତ୍ରମାନଙ୍କୁ ସେ ନିଜ ପିଲାପରି ଶ୍ରଦ୍ଧା କରନ୍ତି । ଆଜି ତୃତୀୟ ବାର୍ଷିକ ଗଣିତ ଅନର୍ସ କ୍ଲାସରେ ତାଙ୍କର ପାଠ ପଢ଼େଇବା ଆରମ୍ଭ । ସେ ହସିହସି କହିଲେ ଏ କ୍ଲାସରେ ତୁମେ ତ ଦୁଇ ଜଣ ପିଲା । ଦୁଇଜଣଙ୍କ ପାଇଁ ବ୍ଲାକବୋର୍ଡ଼ କ'ଣ ବ୍ୟବହାର କରିବା । ତୁମ ଦୁହିଁଙ୍କ ରଫ ଖାତା ଅଦଳ ବଦଳ କରି ତୁମର ପାଖରେ ବସି ମୁଁ ତୁମକୁ ପଢ଼ାଇବି ।

ଏବେ ଗତାନୁଗତିକ ପନ୍ଥାରେ ପାଠପଢ଼ା ଆଗେଇ ଚାଲିଛି । ଗତ ସପ୍ତାହରେ ପ୍ରଫେସର ଶେଖର ଖାତାରେ କେତେ ଖଣ୍ଡ ଅଙ୍କ କଷିଥିଲେ । ସେଦିନ ଅମିତା କ୍ଲାସରେ ଅନୁପସ୍ଥିତ ଥିଲା । ଆଜି ପ୍ରଫେସର ସେଇ ଅନୁଚ୍ଛେଦରୁ ଖଣ୍ଡେ ଅମିତାକୁ ପଚାରିଲେ । ଅମିତା ସେ ଗଣିତ କେତୋଟି ବୁଝିନି । ଉତ୍ତର କ'ଣ କିପରି ଦେବ ଭାବି ହତୋତ୍ସାହ ହୋଇପଡ଼ିଲା । କିଛି ନ କହି ସେ କେବଳ ଛିଡ଼ା

ହୋଇ ରହିଲ ପ୍ରଫେସର ଛିଡ଼ାହୋଇ ରହିବାର କାରଣ ପଚ୍ଚରିଲେ । କିଛି ନ କହି ଅମିତା କେବଳ ଲୁହ ଗଡ଼ାଇଲା । ପ୍ରଫେସର ଶେଖର ଆଡ଼େ ଚାହିଁଲେ । ଶେଖର କହିଲା--ଏଇ ଅନୁଚ୍ଛେଦଟି ପଢ଼ାହେଲା ଦିନ ଅମିତା କ୍ଲାସକୁ ଆସି ନଥିଲା ।

ପ୍ରଫେସର ଉଜ୍ଜ୍ୱଳ ମୂର୍ତ୍ତି ଅମିତାକୁ କହିଲେ, 'ତୁମେ ଅନୁପସ୍ଥିତ ଥିଲ; କିନ୍ତୁ ଯେଉଁଦିନ କ୍ଲାସରେ ଯୋଗଦେଲ ତୁମର ଅନୁପସ୍ଥିତରେ କ୍ଲାସରେ କ'ଣ ପଢ଼ା ହୋଇଛି ସେ ସବୁ ତୁମେ ସେଇଦିନ ବୁଝିବା କଥା । ତାହା ନକଲେ ତୁମେ ଅନେକ ସମୟରେ ଏଇପରି ଅସୁବିଧାର ସମ୍ମୁଖୀନ ହେବ । ସେଇପରି ପ୍ରଫେସର ଶେଖରକୁ କହିଲେ । "ତୁମେ ଜାଣ ଅମିତା କ୍ଲାସକୁ ଆସି ନଥିଲା । ତେଣୁ ତା' ପର କ୍ଲାସରେ ତୁମେ ତାକୁ ଏଇ ପଢ଼ା ବିଷୟରେ ଟିକେ ଧାରଣା ଦେବା ଉଚିତ ଥିଲା ।"

ପ୍ରଫେସର ଉପଦେଶ ଦେଇ ଚାଲିଛନ୍ତି । ଆଉ ଛାତ୍ର ଦୁହେଁ ନୀରବରେ ତଳକୁ ମୁହଁ କରି ଶୁଣି ଚାଲିଛନ୍ତି । ଏ ଦୁହିଁଙ୍କର ନୀରବତାରେ ପ୍ରଫେସର କମିତି ଅଶ୍ୱସ୍ତି ବୋଧ କଲେ । ସେ ହଠାତ୍ କହି ପକାଇଲେ, ତୁମେ ଦୁହେଁ ନୀରବ, କ'ଣ ପରସ୍ପର ଭିତରେ କଥାବାର୍ତ୍ତା ନାହିଁକି ? ଦୁଇଜଣଙ୍କ ଭିତରେ ସହଯୋଗ ନରହିଲେ ପଢ଼ାପଢ଼ି କରିବ କେମିତି ? ଅମିତାକୁ ଲକ୍ଷ୍ୟ କରି ସେ କହିଲେ, ବୁଝିଲ ଅମିତା ! ଶେଖର ଭଲ ଜଣେ ବୁଦ୍ଧିମାନ ମେଧାବୀ ଛାତ୍ର ମୋ ଶିକ୍ଷକ ଜୀବନରେ ମୁଁ କମ୍ ଦେଖିଛି । ଏଇଟା ତୁମପାଇଁ ଏକ ବଡ଼ ଭାଗ୍ୟର କଥା ଯେ ତୁମେ ତାର ସହପାଠୀ । ତେଣୁ ତୁମର ଯେଉଁଠି ଯାହା ଅବୋଧ ହେବ ତୁମେ ବିନା ଦ୍ୱିଧାରେ ତା'ଠାରୁ ବୁଝି ନେଇ ପାରିବ ।

ଶ୍ରାବଣ ମାସର ମେଘୁଆ ଆକାଶ । ଆକାଶଟା କଳା ବାଦଲରେ ଛାଇ ହୋଇଗଲାଣି । ପବନ କମିଗଲାଣି । ସକାଳ ୮ଟା ମାତ୍ର । ହଠାତ୍ କଳାମେଘଟା, ଉଠେଇ ଆସିବ, କିଏ କଣ ଜାଣିଥିଲା ? ଆଉ ଟିକଏ ପରେ ବର୍ଷାଟା ହୋଇଯିବ କି କଣ ? ଅମିତା କଲେଜ ଯିବାପାଇଁ ବାହାରି ପଡ଼ିଲା । ରିକ୍ସା ଡାକି ବସିପଡ଼ିଲା ସେଥିରେ । ଅଳ୍ପ କେତେ ଦୂର ଯାଇଛି କି ନାହିଁ ଆରମ୍ଭହେଲା ମୂଷଳଧାରାରେ ବର୍ଷା ଆଉ ପବନ । ଅମିତା ମନରେ ଛନକା ପଶିଲା । ଘରୁ ବାହାରିବାବେଳେ ବୋଉ ମନା କରୁଥିଲା କଲେଜ ଯିବାକୁ । ସତରେ କି ଦୁର୍ଯୋଗରେ ସେ ଘରୁ ବାହାରିଲା କେଜାଣି । ତା' ସହିତ ତାକୁ ତାକୁ ଗୋଟେ ବୁଢ଼ା ରିକ୍ସାବାଲା ବି ଜୁଟିଛି । ରିକ୍ସାର ସାମନା ପରଦା ନାହିଁ, କଣ କରିବ କିଛି ଉପାୟ ନାହିଁ । ବୁଢ଼ାଟି ଧୀରେ ଧୀରେ ରିକ୍ସା ଚଳାଉଛି, ମଝିରେ ମଝିରେ କହୁଛି, 'ବୁଝିଲ ମା'

ଏଇ ଅଳ୍ପସମୟ ପରେ ମୁଁ ତୁମକୁ ନେଇ କଲେଜରେ ପହଞ୍ଚାଇ ଦେବ ଯେ । ରିକ୍‌ସା ଚଲେଇବାରେ ମୋର କୋଡ଼ିଏ ବର୍ଷ କଟିଗଲାଣି । ମେଘ ବରଷାକୁ ମୋର ଡର ନାହିଁ । ମୋ' ଦେହ ଅପେକ୍ଷା ତୁମମାନଙ୍କ କାମ ମୋ ପାଇଁ ବଡ଼ । ତୁମଭଳି ଏମିତି କେତେ ମା' ମାନଙ୍କୁ ମୁଁ ଏଇଭଳି ଝଡ଼ ବର୍ଷାରେ ସ୍କୁଲ, କଲେଜ ନେବା ଆଣିବା କରିଛି ।'

ଅମିତା ନୀରବ । ବର୍ଷା ଛିଟିକା ଗୁରିଆଡ଼ୁ ବାଜି ପୁରା ଭିଜାଇ ଦେଲାଣି ତାକୁ । ଶୀତରେ ଓଠ ଥରି ଉଠୁଛି । ଉଁ ! ଏଡ଼ିକବେଳେ ବର୍ଷାଟା ଥିଲା ତାକୁ ହଇରାଣ କରିବାକୁ, କଲେଜ ଯାଇ ସାରିଥିଲେ ବର୍ଷାଟା ହୋଇ ନ ଥା'ନ୍ତା ! ଏମିତି କେତେ କଥା ଭାବି ଯାଉଥିଲା ଅମିତା ।

ରିକ୍‌ସା କଲେଜ ପାଖରେ ପହଞ୍ଚିଗଲା । ପାଣି ସରସର ହୋଇ ରିକ୍‌ସାରୁ ଓହ୍ଲାଇ ପଡ଼ିଲା ଅମିତା । ରିକ୍‌ସା ବାଲାକୁ ପଇସା ବଢ଼ାଇଦେଇ ସେ ସିଧା ଗ୍ଲାଲିଗଲା ଅନର୍ସ କ୍ଲାସ ପାଖକୁ । ଏମିତି ଅବସ୍ଥାରେ ଅମିତାକୁ ଦେଖି ଅବାକ୍ ହୋଇଗଲା ଶେଖର ।

ତାର ସଫେଦ୍ ଧଳା ଶାଢ଼ୀଟି ସମ୍ପୂର୍ଣ୍ଣ ବର୍ଷାରେ ଭିଜି ଯାଇଥିଲା । ମୁଣ୍ଡରୁ ଟୋପା ଟୋପା ପାଣି ନାକ ଉପର ଦେଇ ବୋହି ପଡ଼ୁଥିଲା । ସ୍ପଷ୍ଟ ଦିଶୁଥିଲା ତା'ର ସୁଠାମ ଅଙ୍ଗ ଅବୟବ ।

ଶେଖର ପକେଟରୁ ପ୍ରଶସ୍ତ ସମ୍ବଲପୁରୀ ରୁମାଲ ଖଣ୍ଡେ ବାହାରକରି ତା' ହାତକୁ ବଢ଼ାଇ ଦେଇ କହିଲା, "ଘର ଭିତରକୁ ଯାଇ ଭଲ ଭାବରେ ପୋଛିପାଛି ହୋଇପଡ଼, ଅଣ୍ଡା ଧରିବ । ଏତେ ବଡ଼ ବର୍ଷାରେ ଆସିଲ କାହିଁକି ?"

ଅମିତା ଭିତରକୁ ଯାଇ ପୋଛିପାଛି ହୋଇ କିଛି ସମୟ ପରେ ବାହାରି ଆସିଲା ।

ଦୁହେଁ ଯାଇ କ୍ଲାସରେ ବସିଲେ । ଅମିତା ଶାଢ଼ୀ କାନିରୁ ପାନ ଦୁଇଖଣ୍ଡି ବାହାର କରି କହିଲା—

"ବୋଉ ଭଲ ପାନ ଭାଙ୍ଗେ, ଅନେକ ପ୍ରକାର ମିଠା ମସଲା ଦେଇ ପାନ ଭାଙ୍ଗି ମୋତେ ଦେଇଛି, ନିଅ ଖାଇବ ।"

ଶେଖର ହସି ହସି ତା ହାତରୁ ପାନ ଖଣ୍ଡେ ନେଇ ପାଟିରେ ଦେଲା । ନୀରବରେ କିଛି ସମୟ କଟିଲା ପରେ ଅମିତା ପ୍ରଶ୍ନକଲା, "ଝିଅମାନେ ତୁମ ଆଖିରେ

କପଟ ଦେଖାଯା'ନ୍ତି ? ତୁମେ କ'ଣ କୌଣସି ଝିଅ ସଙ୍ଗରେ କେବେ ମନଖୋଲି କଥା ହୋଇନ ? ଝିଅମାନଙ୍କୁ ତୁମେ ଏତେ ଘୃଣାକର କାହିଁକି ?

ଏକାବେଳକେ ଅନେକଟି ପ୍ରଶ୍ନ । ଅବାକ୍ ହୋଇ ଯାଉଥିଲି ଶେଖର, କି ଉତ୍ତର ଦେବ ସେ । କହିଲା "କାହିଁ ନାହିଁତ, ମୁଁ କାହାରିକୁ ଘୃଣା କରେନି, ଘୃଣା କରିବି କାହାକୁ, କାହିଁକି ବା ଘୃଣା କରିବି ? ମୋ ଆଖିରେ ସମସ୍ତେ ସମାନ ହେଲେ ଆବଶ୍ୟକତା ନ ପଡ଼ିଲେ ବଳେ ବଳେ କ'ଣ କହିବି ସେମାନଙ୍କୁ ?"

ଅମିତା କହିଲା, "ଏ ସବୁ କଣ ତୁମ ଅନ୍ତରର କଥା ?"

"ତୁମକୁ ମିଛ କହି ଲାଭ କ'ଣ ?" କହିଲା ଶେଖର ।

ଶେଖର ଚୌଧୁରୀର ବଳିଷ୍ଠ ବ୍ୟକ୍ତିତ୍ୱ ପାଖରେ କ୍ରମେ ଅମିତା ଦୁର୍ବଳ ହୋଇ ପଡ଼ୁଥିଲା । ଶେଖର ପ୍ରତି ତା'ର ମୋହ ଅମାବାସ୍ୟା ରାତ୍ରି ଭଳି ବହଳ ହୋଇ ଆସୁଥିଲା । ଆଜି ଶେଖରକୁ ପାନ ଖଣ୍ଡେ ଖୁଆଇ ପାରିଥିବାରୁ ମନେ ମନେ ଅନେକ ଖୁସି ହେଉଥିଲା ସେ । ମନେମନେ ଭାବୁଥିଲା, "ଶେଖର ଭଳି ପିଲା କୋଟିକରେ ଗୋଟିଏ ଥା'ନ୍ତି । ପ୍ରଫେସରଙ୍କ ପ୍ରଶଂସା ଯାହା ଉପରେ ଅଜାଡ଼ି ହୋଇ ପଡ଼ୁଛି, ତାକୁ ବା ଆଉ କିଏ ସରିହେବ ?

ବିକାଶ ଗୁପ୍ତ ଶେଖର ଓ ଅମିତାଙ୍କର ସହପାଠୀ, ବନ୍ଧୁ । ପାଠପଢ଼ା ଯାହା ହେଉନା କାହିଁକି ତା'ର ବେଶପୋଷାକ ପ୍ରତି ସେ ବେଶ ସଚେତନ । ମୁଣ୍ଡରେ ସାମ୍ପୋକରା ବାବୁରି ବାଳ ପବନରେ ଇତସ୍ତତଃ ଉଡ଼ୁଥାଏ । ସପ୍ତାହର ପ୍ରତିଦିନ ସେ ବିଭିନ୍ନ ଡିଜାଇନ୍‌ର ପୋଷାକ ପିନ୍ଧି କଲେଜକୁ ଆସେ । ପାଠପଢ଼ା ତା' ପାଇଁ ଏକ ସଉକ । ଭଲ ପିନ୍ଧି, ଭଲ ଖାଇ, ନାଚଖେଳି, ମଉଜ ମଜ୍‌ଲିସରେ ଜୀବନ କଟାଇ ଦେଲେ ଯାଏ । ଏ ଜୀବନ ଅଳୀକ । ଏତେ କଷ୍ଟକଲେ କି ଲାଭ ମିଳିବ ?

ନୂଆ ଡିଜାଇନ୍‌ର ଡ୍ରେସ ପିନ୍ଧି, ପାଟିରେ କଡ଼ାପାନ ଖଣ୍ଡେ ଜାକି, ହାତରେ ସିଗାରେଟ୍ ଖଣ୍ଡେ ଧରି ଲେଡିଜ୍ କମନରୁମ୍ ଆଗରେ ବାରମ୍ବାର ଏପଟ ସେପଟ ହେବା ତା'ର ଏକ ନିତିଦିନିଆ ଅଭ୍ୟାସ । ତାକୁ ତାରିଫ କରୁଥିବା ବନ୍ଧୁମାନଙ୍କ ସହ ବାଜିରଖି ସେ କଲେଜର ଅର୍ଦ୍ଧାଧିକ ଝିଅଙ୍କ ସହ କେବେ କେମିତି

ପଢେ ଅଧେ କଥାହୋଇ ବାହାବା ନେଇଛୁ । ତାରିଫକରି ବନ୍ଧୁମାନଙ୍କଠାରୁ ଏଇଥିପାଇଁ କେତେଥର ଗୁ'ପାନ, ମିଠା ଇତ୍ୟାଦି ଝଡ଼ାଇଛୁ । ଏସବୁ ବଦ୍‌ଗୁଣ ସତ୍ତ୍ୱେ ବି ଶେଖରର ଭଲ ନମ୍ବରପାଇ ଗ୍ରୁପଙ୍କ ସହ ତାର ବେଶ୍ ମଧୁର ସମ୍ପର୍କ । ପିକ୍‌ନିକ୍ ହେବ, ପୂଜା ହେବ ଏସବୁଥିରେ ସେ ଶେଖରର ପରାମର୍ଶ ନିଏ । ଏଇସବୁ କାମପାଇଁ ଶେଖର ତାକୁ ଖୁବ୍ ପ୍ରଶଂସା କରେ ଉତ୍ସାହିତ କରେ । କେବେକେବେ ସେ ଶେଖରକୁ ଥରେ ଅଧେ ସାଥିରେ ନେଇ ସନ୍ଧ୍ୟାବେଳେ ବଜାରରେ ବୁଲିଆସେ ।

ଅମିତା ଯେଉଁଦିନ କ୍ଲାସରେ ଯୋଗଦେଲା, ସେଦିନ ବିକାଶ ରାୟ ତାକୁ ଦେଖି ଅଭିଭୂତ ହୋଇ ଯାଇଥିଲା ତା' ରୂପ ଲାବଣ୍ୟରେ ମୁଗ୍‌ଧହୋଇ ସେ ତା' ଆଖିକୁ ବିଶ୍ୱାସ କରି ପାରୁନଥିଲା । ଏ ଧରାରେ ଏପରି ସୁନ୍ଦରୀ ଝିଅ ଥାଇ ପାରନ୍ତି ।

ଅମିତା ସାଥିରେ ପଦେ କଥା ହେବାପାଇଁ ମନ ଛଟପଟ ହେଉଥିଲେ ବି ସେ ହଠାତ୍ ସାହସ କରିପାରୁ ନଥିଲା । ପିକ୍‌ନିକ୍‌ର ଆୟୋଜନ କଲାବେଳେ ଅନ୍ୟ ପିଲାମାନଙ୍କଠାରୁ ଦସ୍ତଖତ ନେଇ ସାରିଲାପରେ ବିକାଶ ପହଞ୍ଚିଲା ଅମିତା ପାଖରେ । ପିକ୍‌ନିକ୍ ସମ୍ପର୍କରେ ବୁଝାଇବା ଭିତରେ ସେ ଏଣୁତେଣୁ କେତେକଥା କହିଚାଲି ଯାଉଥିଲା ମନକୁମନ । ଅମିତା ଦସ୍ତଖତ କରି ତା' ହାତକୁ ତାଲିକାଟି ବଢ଼ାଇ ଦେଲାପରେ ବିକାଶ ହସି ହସି କହିଲା, ''ନିଶ୍ଚୟ ଯିବେ ଆଜ୍ଞା; କଣ୍ଟିଲୋ ଏକ ସୁନ୍ଦର ଜାଗା । ନୀଳମାଧବଙ୍କୁ ଦେଖିବାର ସୁଯୋଗ ପାଇବା । ଦେଖିବେ ଭାରି ମଜା ହେବ । ଆମେତ ସବୁ ଦାୟିତ୍ୱ ନେଲୁ, ଆପଣ ଖାଲି ଯିବେ ଆଉ ଆସିବେ ।'' ସେଇଦିନୁ ବିକାଶ ରାୟ ଅମିତା ସାଥିରେ ବେଶୀ ବେଶୀ ଗପ କରିବାକୁ ଚାହୁଁଥିଲା । କେତେବେଳେ କେମିତି ଅଯାଚିତ ଭାବରେ ତା'ର ଭଲ ମନ୍ଦ ପଚାରି ବୁଝୁଥିଲା। ସମୟେ ସମୟେ କୌଣସି କଥାରେ ଅମିତା ଠାରୁ ପରାମର୍ଶ ଚାହୁଁଥିଲା । ହେଲେ ସବୁଥିରେ ସେ ଲକ୍ଷ କରୁଥିଲା, ଅମିତା କେତେବେଳେ କେମିତି ମୁଣ୍ଡ ଟୁଙ୍ଗାରୁଛି ତ ଆଉ କେତେବେଳେ ନୀରବ ରହୁଛି ।

କଲେଜ ଅଫିସରୁ ଅମିତାର ଠିକଣା ସଂଗ୍ରହ କରିଥିଲା ବିକାଶ ରାୟ । ବେଳେବେଳେ ଭଲ ଲେଖକମାନଙ୍କର ଭଲ ବହି କିଣି ଆଣି ଅମିତାକୁ ଯାଚି କହେ ''ଏ ବହିଟି ବହୁତ ଭଲ, ଏଇଟି ନିଅନ୍ତୁ, ମୁଁ କେବେ ଯାଇ ଆପଣଙ୍କ ଘରୁ ନେଇ ଆସିବି, ଅମିତା ନୀରବ ରହେ ।

ସ୍ମିତା ଅମିତାର ଅନ୍ତରଙ୍ଗ ବାନ୍ଧବୀ । ଦୁହେଁ ଦୁହିଁଙ୍କୁ ଭଲ ଭାବରେ ଜାଣନ୍ତି । ସୁଖ ଦୁଃଖର ସାଥୀ ଏଇ ସ୍ମିତା ଆଉ ଅମିତା । କେବଳ ଏ ଦୁହେଁ ଏକା ମା' ପେଟର ଭଉଣୀ ହୋଇ ପାରି ନାହାଁନ୍ତି ।

ଲେଡ଼ିଜ୍ କମନ୍ ରୁମ୍ । ପାଖାପାଖି ସ୍ମିତା ଆଉ ଅମିତା । କମନ୍ ରୁମ୍ ପ୍ରାୟ ଶୂନ୍‌ଶାନ୍, ଅମିତାର ନିରବତାକୁ ଲକ୍ଷ୍ୟ କରି ତା'ର ଗମ୍ଭୀର ମୁହଁର ପାଚିଲା ଓଠକୁ ହଲାଇ ଦେଇ ସ୍ମିତା କହିଲା, "କ'ଣ ହୋଇଛି କି ମାନମୟୀ ରାଧିକା ! କ'ଣ କୃଷ୍ଣ ଆସିଲେ ମାନଭଞ୍ଜନ ହେବ !"

ସ୍ମିତା, ମନର ଅସୁମାରି କୋହକୁ ଚାପିରଖି ମୁଁ ଆଉ ପାରୁନି । ତୋ ପାଖରେ ମୋ'ର ଏଇ ଶେଷଟିଆ ଅଳି । ହେୟଜ୍ଞାନ କରି ମୋତେ ଭୁଲ୍ ବୁଝିବୁନି, ଦୂରେଇ ଦେବୁନି, ବୋଲି ପ୍ରଥମେ ଅନୁରୋଧ କରୁଛି ।

ମୁଁ ତୋତେ ଦୂରେଇ ଦେବି ମୁଁ ତୋତେ ଭୁଲ ବୁଝିବି, ଏ କଥା ତୁ କେବେଠୁ ଶିଖିଲୁ ! କହ ତୋ'ର କ'ଣ ହୋଇଛି, କହିଲା ସ୍ମିତା । ଶେଖର ପ୍ରତି ମୋ ମନରେ ଅସୁମାରି ଦୁର୍ବଳତା । ବୁଝି ପାରୁନି, ଜାଣିପାରୁନି ତାଙ୍କ ପ୍ରତି ଦିନକୁ ଦିନ ମନ ମୋର ପୂର୍ଣ୍ଣିମୀ ତିଥିର ଜୁଆରଭଳି ବଢ଼ିବଢ଼ି ଚାଲିଛି । ଇଚ୍ଛା କରି ବି ମୁଁ ସେଥିରୁ ନିବୃତ୍ତି ରହିପାରୁନି । ମୁଁ ଚାହେଁ ତାଙ୍କର ସ୍ନେହ, ଆଶ୍ଳେଷ, ଯାହାକୁ ପାଥେୟକରି ମୁଁ ଭବିଷ୍ୟତରେ ସ୍ୱପ୍ନ ଦେଖିବି । କିନ୍ତୁ ମୁଁ ନିରୁପାୟ । ତାଙ୍କୁ ଏତେ ପାଖରେ ପାଇ, ତାଙ୍କପାଇଁ ଏତେ ମମତା ମନରେ ରଖି ମୁଁ ତାଙ୍କୁ ନିଜର କରିପାରୁନି । ମୋର ସ୍ନେହପୂର୍ଣ୍ଣ ବ୍ୟବହାର, ଆନ୍ତରିକତା, ତାଙ୍କ ମନରେ ଟିକେ ବି ରେଖାପାତ କରୁନି ।

ଏପରି ବ୍ୟସ୍ତ ହେଲେ କିପରି ହେବ । ଏ କ୍ଷେତ୍ରରେ ମୁଁ ତୋତେ ନିଶ୍ଚୟ ସାହାଯ୍ୟ କରିବି । ଶେଖର ଅତିମାତ୍ରାରେ ଆତ୍ମାଭିମାନୀ, କଲେଜ ତଥା ୟୁନିଭରସିଟିର କୃତୀ ଛାତ୍ର ସେ । ଏତେ ସହସା ତାର ଓଜନ କମାଇବାକୁ ସେ ହୁଏତ ଚାହିଁ ନଥିବ । ତା'ପରେ ପିଲାଦିନରୁ ସେ ମା' ବାପା ଛେଉଣ୍ଡ । ପିଲାଦିନରୁ ଏ ଯାଏ ଅନେକ ଧୋକା ସେ ସହିଲାଣି । ତେବେ ତୋର ବ୍ୟସ୍ତ ହେବାର କିଛି

ନାହିଁ । ଦେଖିବୁ ଆପେ ସବୁ ଠିକ୍ ହୋଇଯିବ । ସ୍ମିତା ହସି ହସି ଅମିତା କୋଳରେ ଲୋଟିଗଲା । ଏଇଥିପାଇଁ ମାନଗିର ମାନ ।

—ଶେଖର ତୁମ କଲେଜରେ ରହୁଛନ୍ତି । ସେ ତୋ କଥା ମନଦେଇ ଶୁଣନ୍ତି । ତୁ ଟିକିଏ ମୋ ପାଇଁ ଏତକ କରି ଦେ ସ୍ମିତା । ତୋର ଋଣୀ ହୋଇ ରହିବି ।

— ଏ ଋଷି ମନଲୋଭା ଚେହେରା ପାଇ ବି ତୁ ଏତେ ବ୍ୟସ୍ତ । ଶେଖରତ ଛାର, ସ୍ୱୟଂ କନ୍ଦର୍ପ ବି ତୋତେ ଦେଖିଲେ ବାଟ ଭୁଲିଯିବେ । ତୁ ବୋଧହୁଏ ଜାଣିନୁ ଏ କଲେଜରେ ଛାତ୍ରୀଙ୍କ ଭିତରେ ଆଉ ଅଧ୍ୟାପକମାନଙ୍କ ଭିତରେ ପ୍ରତି-ଯୋଗିତା ତୋତେ ନେଇ । ଖାଲି ଶୂନ୍ୟେ ଶୂନ୍ୟେ ତୁ କ'ଣ କଲେଜ କୁଇନ୍ ହୋଇଯିବୁ ବୋଲି ଭାବୁଛୁ ? ଏତକ କହି ସ୍ମିତା ହସିଦେଇ ଅମିତାର ନରମ ଓଠରେ ତା' ଓଠ ଲଗାଇ ଦେଲା । ଅମିତା କୃତ୍ରିମ ରାଗରେ ତାକୁ ପେଲିଦେଇ କହିଲା ଯାଃ' ।

ମହାବିଷୁବ ସଂକ୍ରାନ୍ତି । ଏପ୍ରିଲ ୧୪ ତାରିଖ । ଆଜକୁ ଠିକ୍ ୧୯ ବର୍ଷତଳେ ଅମିତା ଅରୁଣା ଦେବୀଙ୍କର ଶୂନ୍ୟ କୋଳକୁ ପୂରଣ କରି ପୃଥିବୀର ନୂତନ ଆଲୋକ ଦେଖିଥିଲା । ଅରୁଣା ଦେବୀଙ୍କର ସେଇ ପୁଅ, ସେଇ ଝିଅ । ଚନ୍ଦ୍ରକଳା ପରି ବଢ଼େଇ ଆଣିଛନ୍ତି ଝିଅକୁ ସେ । ଆଜି ଅମିତାର ୧୯ତମ ଜନ୍ମ ବାର୍ଷିକୀ । ପ୍ରତି ବର୍ଷ ଏଇ ଦିନଟିକୁ ମହା ଧୁମ୍‌ଧାମ୍‌ରେ ପାଳନ କରନ୍ତି ଅମିତାର ବାପା, ମା ।

ଗୋଟିଏ ବୋଲି ଝିଅ, କୋଉ ନ'ଟା ନା ଛ'ଟା ଅଛନ୍ତି ! ଅମିତା ଯେପରି ତାଙ୍କର ଝିଅ ନୁହେଁ, ଗୁଣ ଗାରିମା ପୁଅ । ଅନେକ ଭଲମନ୍ଦର ସମସ୍ୟା ନେଇ ସେ ସମୟେ ସମୟେ ଅମିତା ସହିତ ପରାମର୍ଶ କରନ୍ତି । କେବେ ଝିଅର କିଛି ଅଭାବ ହେବ, ସେ ଦୁଃଖ କରିବ, ଏପରି ପରିସ୍ଥିତି ପାଇଁ ସର୍ବଦା ସଜାଗ ଥାଆନ୍ତି ରାମବାବୁ ।

ଆଜି ତାଙ୍କର ବ୍ୟସ୍ତତାର ସୀମା ନାହିଁ । ଏଭଳି ପବିତ୍ର ଦିନରେ ଯେପରି ଅତିଥିମାନଙ୍କର କିଛି ଅସୁବିଧା ନ ହୁଏ ।

ରଘୁଆ ଆଜି ବହୁତ ଖୁସି, ଆଜି ତାର ଜନ୍ମଦିନ । ଏଇଦିନ ରଘୁଆ ନୂଆ ପୋଷାକ ପିନ୍ଧେ । କେନ୍ଦ୍ରାପଡ଼ାରେ ରଘୁଆର ଘର । ମା' ଛେଉଣ୍ଡ ରଘୁ ଯେତେ-ବେଳେ ୭।୮ ବର୍ଷର ହୋଇଥିଲା ସେତେବେଳେ ତା'ର ଗରିବ ବାପା ତାକୁ ଆଣି

ରାମବାବୁଙ୍କ ପାଖରେ ରହୁଥିଲେ । ପିଲାଟା ବଞ୍ଚି ଯିବତ । ଦୟାଳୁ ରାମବାବୁ ସେଇଦିନୁ ତାକୁ ତାଙ୍କ ପାଖରେ ଆଶ୍ରୟ ଦେଇଛନ୍ତି । ଏବେ ରଘୁଆ ୧୨ ବର୍ଷର ବାଳକ । ସବୁ କାମରେ ଧୂରନ୍ଧର । ମେସିନ୍ ଭଳି ସବୁ କାମ ଅବିରାମ ଗତିରେ ବିନା ଦ୍ୱିଧାରେ କରିଯାଏ । ଆଜି ତା' ଗୋଡ଼ ତଳେ ଲାଗୁନି । ଅତିଥିମାନଙ୍କୁ ଯଥା ସ୍ଥାନରେ ବସାଇବା, ପାନ, ସିଗାରେଟ୍ ଦେବା ଇତ୍ୟାଦି ତାକୁ ବତାଇବାକୁ ପଡ଼େ ନି ।

ସନ୍ଧ୍ୟା ୭ଟା । ଅତିଥିମାନେ ରୁ ଣ୍ଡ ହୋଇ ଗଲେଣି । ଅମିତାର କେତେ ଜଣ ସହପାଠୀ ବନ୍ଧୁ ବି ବିଭିନ୍ନ ଉପହାରମାନ ଧରି ଆସି ପହଞ୍ଚି ଗଲେଣି ।

ମନ ତା'ର କ୍ରମେ ବ୍ୟଥାରେ ଭରି ଯାଉଛି, କୁହୁଳି ଉଠୁଛି ଅନ୍ତର । ଏ ଯାଏ ଶେଖରର ଦେଖା ନାହିଁ ।

ସେଦିନ କେତେ ଥର ନିମନ୍ତ୍ରଣ ପକାଇ ତା' ଜନ୍ମ ଦିନରେ ତାଙ୍କ ଘରକୁ ଆସିବାପାଇଁ ସେ ଶେଖରକୁ ଅନୁରୋଧ କରିଥିଲା । ଆଗରୁ ଯେତେଥର ଶେଖରକୁ ସେ ତାଙ୍କ ଘରକୁ ଆସିବା ପାଇଁ କଥା ପ୍ରସଙ୍ଗରେ କହିଛି ସବୁ ଥର କିଛି ନା କିଛି ଆଳ ଦେଖାଇ ପରେ ଯିବି କହି ଶେଖର ମନା କରି ଦେଇଛି । ଏଥର ତା' ଜନ୍ମ-ଦିନ କଥା ଶୁଣି ଶେଖର ହସି ହସି ତାକୁ କଥା ଦେଇଛି ଆସିବା ପାଇଁ, ହେଲେ ଏ ଯାଏ ତାଙ୍କର ଦେଖା ନାହିଁ ।

ଅତିଷ୍ଠ ହୋଇ ଉଠୁଥିଲା ଅମିତାର ମନ । କ'ଣ ହେଲା ? କିପରି ଜାଣିବ ସେ ଶେଖର ଆସିବେ କି ନାହିଁ ।

ସ୍ମିତା— ସ୍ମିତା ହେଲେ ଆସନ୍ତା, ତା'ର ବି ଏତେବେଳ ଯାଏ ଦେଖା ନାହିଁ । ଠିକ୍ ଏତିକବେଳେ ବାହାରେ ସ୍ମିତାର ପାଟି ଶୁଭିଲା ।

ସ୍ମିତା ଆସିଲାଣି । ତା'ଠାରୁ ନିଶ୍ଚୟ କିଛି ସମ୍ବାଦ ମିଳିବ । ଧାଇଁଗଲା ସେ ସ୍ମିତା ପାଖକୁ । ପ୍ରଶ୍ନବାଚୀ ଦୃଷ୍ଟିରେ ସେ ଚାହିଁ ରହିଲା ତା' ଆଡେ ।

କହିଲା ଲାବଣ୍ୟବତୀ, ଏ ବ୍ୟର୍ଥ ଗୃହାଣୀ କ'ଣ ପାଇଁ ! ମୁଁ ତୁମ କୃଷ୍ଣ ନୁହେଁ ମ । ତୁମ ମନର ମଣିଷ ଆଉ ଟିକିଏ ପରେ ଆସି ପହଞ୍ଚି ଯିବେ ଯେ । ଆସିଲା ବେଳେ ତାଙ୍କ ଘରକୁ ଯାଇଥିଲି । ବାବୁ ପୋଷାକ ପିନ୍ଧୁଥିଲେ । କହିଲେ, "ଟିକିଏ ଜରୁରି କାମରେ ବାହାରକୁ ଯାଉଛି । ଏଇ ୧୫/୨୦ ମିନିଟ୍ ମଧ୍ୟରେ ମୁଁ ଅମିତାର ଜନ୍ମ ଉତ୍ସବରେ ଯୋଗ ଦେବି ।"

ମନେ ମନେ ଠାକୁରଙ୍କୁ ପ୍ରଣତ ଜଣାଉଥିଲା ଅମିତା । କୋଳାହଳ ଭିତରେ ଶେଖର ଆସି ପହଞ୍ଚିଗଲା ।

ପିତା, ଅମିତା ଭଉଣୀ ପରେ ବ୍ୟସ୍ତ ଥିଲେ । ଅରୁଣାଦେବୀ ବାରଣ୍ଡାରେ ଛିଡ଼ା ହୋଇଥିଲେ । ଅମିତାର ଚେହେରା ସହିତ ସାମଞ୍ଜସ୍ୟ ଥିବାରୁ ଅମିତାର ମା' ବୋଲି ଚିହ୍ନି ପାରିଥିଲା ଶେଖର । ନମସ୍କାର ଜଣାଇ ତାଙ୍କ ହାତକୁ ବହି ଖଣ୍ଡେ ବଢ଼ାଇ ଦେଲା ସେ । ନାଲି କଭର ହୋଇଥିବା ବହିଟି ଉପରେ ଲେଖା ଥିଲା, "ଅମିତା ଦାସର ଜନ୍ମ ବାର୍ଷିକୀରେ ଶେଖର ମୈତ୍ରୀ ଧୁସ୍ତର ଟିକେ ଉପହାର ।"

ବହିଟି ଉପରୁ ଏତକ ପଢ଼ି ଅରୁଣାଦେବୀ କହି ପକାଇଲେ, "ବାପା ମୋର, ତୁମକୁ ଟିକିଏ ଦେଖିବି ବୋଲି ଅନେକ ଦିନୁ ଆଶା ବାନ୍ଧି ବସିଛି । ଆଜ ହେ ସୁଯୋଗ ପାଇଲି । ଆସ, ସେମାନେ ଭିତରେ ଅଛନ୍ତି ।"

ଶେଖରକୁ ଦେଖି ଅମିତାର ଖୁସିର ସୀମା ରହିଲା ନାହିଁ । ମନ ପକ୍ଷୀ ତା'ର ଉଡ଼ି ଯାଉଛି ଅନେକ ଦୂର, ସୀମାହୀନ ଆକାଶର ବୁକୁ ଚିରି । ମନ ଖୋଜୁଛି ଅଭିସାର କୁଞ୍ଜ, ଯେଉଁଠି ଜୀବନ ତା'ର ସାର୍ଥକତା ଲାଭ କରନ୍ତା ।

ଅମିତା କହିଲା, "ବୋଉ, ଏ ହେଉଛନ୍ତି ଶେଖର ମୈତ୍ରୀ ଧୁସ୍ତ ।"

ବୋଉ କହିଲେ, "ହଁ ମୁଁ ତାଙ୍କୁ ଚିହ୍ନି ସାରିଲିଣି । ସେ ଏଇଠି ଥା'ନ୍ତୁ ।" ମୁଁ ଟିକିଏ ଆସୁଛି, ଭିତରେ ଅନେକ କାମ ।

ଏ ହେଉଛନ୍ତି ଅମିତାର ମା' । କେତେ ସରଳ, କେତେ ଉଦାର । କେବେ କଥା ପ୍ରସଙ୍ଗରେ ଅମିତା ମା'ଙ୍କ ଆଗରେ ମୋ କଥା କହିଥିବେ । ସେଇଥିପାଇଁ ମନେ ରଖି ମୋତେ ଚିହ୍ନିପାରି ଏତେ ଆଦର କରିନେଲେ । ଏପରି ନିଷ୍କପଟ ହୃଦୟ କେତେ ଜଣଙ୍କର ଥାଇପାରେ । ଅମିତା ଠିକ୍ ତାଙ୍କରି ପରି । ଅରୁଣା ଦେବୀଙ୍କ ବାତ୍ସଲ୍ୟ ମମତା ଶେଖରର ପ୍ରାଣରେ ସ୍ନେହର ଅଞ୍ଜନ ବୋଳି ଦେଉଥିଲା । ନୀରବରେ ମଥା ତାର ନଇଁ ଯାଉଥିଲା ଅରୁଣା ଦେବୀଙ୍କ ପାଦ ତଳେ ।

ସବୁଜ ଝିଲ୍‌କ ଶାଢ଼ୀର ଅନ୍ତରାଳରେ ସୁଶ୍ରୀ ଅମିତା । ଧାନପତ୍ର ମୁହଁରେ ମୃଗନୟନର ଚଞ୍ଚଳତା, ଗୋଲାପି ଅଧରରେ ଧୀରେ ସରୁ ହସ । ଆଜାନୁଲମ୍ବିତ କଜ୍ଜଳ ବେଣୀ । ମଥାରେ ସରୁ କୁଙ୍କୁମ ଚିହ୍ନ । ଅମିତାର ମନଲୋଭା ଏଇ ରୂପ ସମ୍ଭାରରେ ଶେଖରର ଆଖି ଝଲସି ଗଲା ପ୍ରଥମ ଥର ପାଇଁ ।

ପ୍ରଥମ ଥର ପାଇଁ ମନଟା ତା'ର କେମିତି ଛନ୍ଦି ହୋଇଯାଉଥିଲା ଅମିତାର ପଣତ କାନରେ ।

ବହିଟି ଉପରୁ ନାଲି କଭରଟି ଖୋଲିଦେଲା ଅମିତା, "ମୋ' ପଢ଼, ମୋ' ଦେବତା" ଏକାବେଳେକେ ବାହାରି ଆସିଲା ସ୍ଫୁଟି ଆଉ ଅମିତାର ପାଟିରୁ ।

ଶେଖର ଆଡ଼େ ଚାହିଁଲା ସେ । ଲଜରେ ଶେଖର ତଳକୁ ମୁହଁ ପୋତିଲା ।

ବିକାଶ ରାୟର ପ୍ରାଣରେ ଅମିତାକୁ ଭଲ ପାଇବାର ମୋହ ଧୀରେ ଧୀରେ ଜମାଟ ବାନ୍ଧି ଆସୁଥିଲା , ତା' ସହିତ ପଦେ କଥା ହେବା ପାଇଁ ପାଗଳ ପରି ହୋଇ ଯାଉଥିଲା ସେ । ତାକୁ ନେଇ କେତେ ନୂଆନୂଆ କଳ୍ପନା କରି ଯାଉଥିଲା ଭବିଷ୍ୟତର ସୁନେଲି ସ୍ୱପ୍ନରେ ବିଭୋର ହୋଇ ।

ଶେଖର ପ୍ରତି ଧୁଷ୍ଟ ପ୍ରତି ସେ ଦିନକୁ ଦିନ ସାତିଶୟ ହୋଇ ଉଠୁଥିଲା । ଶେଖର ଯେପରି ଏ ଦୁନିଆଁରେ ତା'ର ଏକ ଶକ୍ତ ପ୍ରତିଦ୍ୱନ୍ଦୀ, ଏକ ମାତ୍ର ଶତ୍ରୁ ।

ଅମିତା ଓ ଶେଖରର ସମ୍ପର୍କ ଅତି ନିବିଡ଼ । କେଉଁ ମୂହୂର୍ତ୍ତରେ ସେ ଦୁଇ ଜଣ ଯେ ଏକ ହୋଇ ନ ଯିବେ ଏ କଥା କିଏ କହିବ ? ଏଇ ବଦ୍ଧମୂଳ ଧାରଣା ପୋଷଣ କରି ସେ ଅସ୍ଥିର ହୋଇ ଉଠୁଥିଲା ଦିନକୁ ଦିନ ।

ଅମିତାର କନ୍ମଦିନ ସେ ଦେଖିଛି ଶେଖର ପ୍ରତି ତାଙ୍କ ପରିବାରର କି ମୋହ, କି ଆବେଗ । ଏସବୁ ତାକୁ କିପରି ଅଶାନ୍ତି ବୋଧ ହେଉଥିଲା । ସେଦିନ ସେ ଜାଣିଲା ଯେ ଅମିତାର ବାପା କଲେକ୍ଟରଏଟ୍‌ରେ ହେଡ୍‌କ୍ଲର୍କ ଅଛନ୍ତି । ତାଙ୍କର ହୁଏତ ପ୍ରତିପତ୍ତି ନ ଥାଇ ପାରେ । ତାଙ୍କର ବ୍ୟାଙ୍କ ବାଲାନ୍‌ସ, ଗାଡ଼ି ଇତ୍ୟାଦି ବି ନ ଥାଇପାରେ । ତେଣୁ ସହଜରେ ଅମିତାକୁ କରାୟତ୍ତ କରାଯାଇ ପାରିବ ।

କଳେ ବଳେ କୌଶଳେ ଶେଖରକୁ ମୋ' ବାଟରୁ ଘୁଞ୍ଚାଇବାକୁ ହେବ । ଖ୍ୟାତନାମା ଶିଳ୍ପପତି ଗିରିଜା ରାୟଙ୍କ ପୁତ୍ର ମୁଁ । ଧନ, ମାନ କ'ଣ ନାହିଁ ମୋର । ଅମିତା ମୋ' ଘରକୁ ଆସିଲେ ରାଣୀ ହେବ । ହେଲେ ଶେଖର—କ'ଣ ଅଛି ତା'ର ? ନା ଧନ, ନା ପ୍ରତିପତ୍ତି । କାଙ୍ଗାଳଟାଏ । କ୍ଲାସରେ ଫାଷ୍ଟ ହେଉଛି ।

ସବୁପିଲା ଆଉ ଶିକ୍ଷକଙ୍କ ମୁହଁରେ ତା'ର କଥା । ତାର ପ୍ରଶଂସା । ସେଇଥି ପାଇଁ ତା'ର ଗର୍ବ । ଏ ସବୁଥିରୁ କ'ଣ ମିଳିବ !

ପୁଣି କଲେଜ ଖୁଲିବ୍ ଅମିତା କ'ଣ ତା'ର ହୋଇ ଯିବ ? ସେ କ'ଣ ଏତେ ବଡ଼ ଭୁଲ୍ କରିବ ? ଶେଖର ଠାରୁ ସେ ବା ପାଇବ କ'ଣ ? ଅନେକ ଅହେତୁକ ଭାବନା ବ୍ୟତିବ୍ୟସ୍ତ କରି ଦେଉଥିଲା ବିକାଶ ରାୟଙ୍କୁ ।

ଅମିତା ସହ ଟିକେ ଘନିଷ୍ଠ ହେବାକୁ ସମସ୍ତ ଉଦ୍ୟମ ତାର ବ୍ୟର୍ଥ ହୋଇଛି । କଲେଜରେ କେତେବେଳେ କେମିତି ଯଦି ତାକୁ ଥରେ ଅଧେ କ'ଣ ପଚାରିଛି, ପାଇଛି କେବଳ ସଂକ୍ଷିପ୍ତ ଉତ୍ତର । "ତେବେ ସେ ଯାହା ହେଉ ମୋତେ ମୋ କାର୍ଯ୍ୟ ଯେନ ତେନ ପ୍ରକାରେଣ ସମ୍ପାଦନ କରିବାକୁ ହେବ ।"

"ଧନ ପ୍ରତି କାହାର ବା ଲୋଭ ନ ଥାଏ । ଅମିତାର ବାପା ଜଣେ ସାମାନ୍ୟ ବେତନ ଭୋଗୀ କର୍ମଚାରୀ । ମୋ'ର କୋଠାବାଡ଼ି, ଗାଡ଼ିମଟର, ବ୍ୟାଙ୍କ ବାଲାନ୍ସ ଦେଖି ସେ ନିଶ୍ଚୟ ଖୁସି ହେବେ । ଝିଅ ଭଲରେ ରହୁ ଏକଥା କେଉଁ ବାପ ମା' ନ ଚାହାଁନ୍ତି । ଶେଖର ହାତରେ ଝିଅକୁ ଟେକି ଦେଇ ସେ କ'ଣ ଏତେ ବଡ଼ ଭୁଲ୍ କରିବେ ?"

"ଆଜିର ମଣିଷ ଆଜି ଧନ ପଛରେ ଧାଇଁ ଚାଲିଛି । ଟଙ୍କା ଯାହାର ଅଛି, ବିଜୟ ଲକ୍ଷ୍ମୀ ତାରି ହାତରେ । ଟଙ୍କା ସବୁ ଅସମ୍ଭବକୁ ସମ୍ଭବ କରିପାରେ । ମୋ'ର ଟଙ୍କା ଅଛି । ମୁଁ ବା ନ ପାରିବି କାହିଁକି ?"

"ଅମିତା ବି ଜଣେ ଭଲ ଛାତ୍ରୀ । କ୍ଲାସରେ ତା'ର ସୁନାମ ଅଛି । ଗୁଣ ଚିହ୍ନେ ଗୁଣିଆ । ତେଣୁ ସେ ଶେଖରକୁ ଭଲ ପାଇବାରେ ବିଚିତ୍ରତା ନାହିଁ । ହେଲେ ଏ ଚପଲତା, ଏ ମୋହ କେତେଦିନ ? ତଥାପି ବି ମୋର ସନ୍ଦେହ ହୁଏ । ଦୁହେଁ ଦୁହିଁଙ୍କୁ ଗଭୀର ଭାବରେ ଭଲ ପା'ନ୍ତି, ବିଶ୍ୱାସ କରନ୍ତି । ମୋ କଥାରେ ଅମିତା ଶେଖରର ପରାମର୍ଶ ନେଇଥାଏ । ଏ ପରିସ୍ଥିତିରେ କ'ଣ କରାଯାଇପାରେ ?"

**ଶ୍ରା**ବଣ ମାସର ଭିଜା ସକାଳ । ପ୍ରାଚୀ ଭାଲରେ ଅରୁଣ ରାଗ ବାଷ୍ପହୋଇ ପଡ଼ିଲାଣି ଧରା ବକ୍ଷରେ । ଓଦା ପବନରେ କଅଁଳ କିରଣର ଶୋଭା ପ୍ରତିବିମ୍ବିତ ହୋଇଛି ମାନବ ପ୍ରାଣରେ । ଓଦା ମାଟିର ଗନ୍ଧ କେମିତି ନୂଆ ନୂଆ ଲାଗୁଛି ।

ରାମବାବୁ ଡ୍ରଇଁ ରୁମରେ ବସି ଖବର କାଗଜ ଉପରେ ଆଖି ପକାଉଥିଲେ । ଅରୁଣା ଦେବୀ ରୋଷେଇ ଘରେ ଚା' ତିଆରି କରୁଥିଲେ । ହଠାତ୍ ରାମ ବାବୁଙ୍କର ଆଖି ଲାଖିଗଲା ଗୋଟିଏ ସମ୍ବାଦ ଉପରେ । ସେ ଡାକିଲେ, "ଏ ଅମିବୋଉ, ହେଇଟି ଭଲ ସମ୍ବାଦ ବାହାରିଛି । ଆସ ଦେଖିବ ।"

ଅରୁଣା ଦେବୀ ଚା' ଧରି ତରତର ହୋଇ ଆସୁ ଆସୁ ଶେଖରକୁ ଡ୍ରଇଁ ରୁମ୍ ପାଖରେ ଦେଖିଲେ ।

"ଆରେ ! ଶେଖର କେତେବେଳେ ଆସି ଏଠି ଛିଡ଼ା ହୋଇଛନ୍ତି, ତୁମେ ଦେଖିନା ନା କ'ଣ ?" କହିଲେ ଅରୁଣା ଦେବୀ ।

"ମୁଁ କେତେବେଳେ ଦେଖିଲି ! ଡାକ ତାଙ୍କୁ ! ଆସ ବାପା ଶେଖର, ବସ । ଅମିତାର ଆଜି ଖୁଦୁରୁକୁଣୀ ଓଷା । କେଉଁଠୁ ଫୁଲ ତୋଳାହେବ, କେଉଁଠି ଠାକୁର ସଜା ହେବ ସକାଳୁ ଉଠି ଦାନ୍ତ ଟିକିଏ ଘଷି ଦେଇ ମାଡିଛି ସେଇଥିରେ । ଏଇ ଟିକିଏ ପରେ ଫେରି ଆସିବ ଯେ" କହିଲେ ରାମବାବୁ ।

"ହଁ କ'ଣ ଖବର ବାହାରିଛି କହୁଥିଲ ପରା"—କହିଲେ ଅରୁଣା ଦେବୀ ।

"ଏଇ ଶେଖର କଥା କହୁଥିଲି ! ଏନ. ସି. ସି.ର ଶ୍ରେଷ୍ଠ କ୍ୟାଡ଼େଟ୍ ଭାବରେ ଘୋଡ଼ା ଉପରେ ବସି କପରି ରାଷ୍ଟ୍ରପତିଙ୍କ ଠାରୁ ପୁରସ୍କାର ଗ୍ରହଣ କରୁଛନ୍ତି, ଗତ ଅଗଷ୍ଟ ୧୫ ତାରିଖ ଦିନ । ଦେଖ ତାଙ୍କ ଫଟୋଟି ଖୁବ୍ ଚମତ୍କାର ହୋଇଛି ନୁହେଁ ?"

"ଏଇମାନେ ଦେଶର ଭବିଷ୍ୟତ । ଏମାନଙ୍କୁ ନେଇ ଦେଶ ନୂତନ ଆଲୋକରେ ଉଦ୍‌ଭାସିତ ହେବ । ଏମାନେ ଦେଶର ଗର୍ବ । ଏମାନେ ସମାଜକୁ ଦିଗ୍‌ଦର୍ଶନ ଦେବେ ।"

ଶେଖର ପ୍ରଶଂସାରେ ପୋଡ଼ି ହୋଇପଡ଼ି ମୁହଁ ତଳକୁ କଲା ।

ରାମବାବୁ କହିଲେ, "ଆଚ୍ଛା ମୁଁ ଟିକେ ବାହାରକୁ ଯାଉଛି । ତୁମେ ତାଙ୍କୁ ଭିତରକୁ ନେଇଯାଅ । ଶେଖର ଅନେକ ଦିନ ହେବ ଆମ ଘରକୁ ଆସିନାହାନ୍ତି । ସେ ଆଜି ଏଇଠି ଖାଇବେ, ତା'ର ବ୍ୟବସ୍ଥା କର ।"—ଏତିକି କହି ରାମବାବୁ ବାହାରକୁ ଚାଲିଗଲେ ।

"ବୁଝିଲ ବାପା, ମୁଁ କ'ଣ କହୁଥିଲି କି ଅମି ଆଉ ତୁମେ ତ ଏକାସଙ୍ଗେ ପଢ଼ୁଛ । ସେ ତା' ପଢ଼ା ଘରେ ଏକା ପଢ଼ାପଢ଼ି କରୁଛି, ଆମ ଘରେ ତ ଆଉ

କେହି ପିଲା ନାହାଁନ୍ତି । ତୁମେ ଆସି ଏଇଠି ତା’ ସାଥିରେ ପଢ଼ାପଢ଼ି କଲେ କମିତି ହୁଅନ୍ତା ! ଅମି କହୁଥିଲା ତୁମର ବି· ଏସ୍ ସି· ପରୀକ୍ଷା ଆଉ ୭।୮ ମାସ ରହିଲା ବୋଲି ।”

“ମୋର ଆସିବାରେ ଆପତ୍ତି ନାହିଁ ଯେ, ହେଲେ ଅମିତାର ଅସୁବିଧା ହେବନି ତ ? ସନ୍ଧ୍ୟାବେଳେ ମୁଁ ପ୍ରଫେସରଙ୍କ ଘରକୁ ପଢ଼ିବାକୁ ଯାଏ”କ—ହିଲା ଶେଖର ।

“ଅମିର କିଛି ଅସୁବିଧା ହେବନି । ଦୁହେଁ ସାଥି ହୋଇ ପ୍ରଫେସରଙ୍କ ଘରକୁ ଯିବ । ତା’ର ସବୁ ବ୍ୟବସ୍ଥା ମୁଁ କରିଦେବ ।”—କହିଲେ ଅରୁଣା ଦେବୀ ।

ଅମିତା ପାଟି କରି ଡାକିଲା, “ଏ ବୋଉ, ଦେଖ, କେତେ ଫୁଲ ଆଣିଛି । ଅନେକ ରଙ୍ଗର ଅନେକ ପ୍ରକାର ଫୁଲ । ପୂଜା ମଣ୍ଡପରେ ଯେତେ ଝିଅ ଆଜି ଠାକୁରଙ୍କୁ ଫୁଲ ଦେବେ, ମୁଁ ସବୁଠାରୁ ବେଶୀ ଫୁଲ ଦେବ ।”

“ପାଗଳୀ କ’ଣ କହି ଯାଉଚ୍ଛୁ । ଏ ଅମି !”—ଡାକିଲେ ଅରୁଣା ଦେବୀ ।

“କ’ଣ ବୋଉ, ମୁଁ ଧୋଇ ହେଉଛି । ତୁ ଏଠିକି ଆ, ଦେଖ, ମୁଁ କେମିତିକା ଜାତି ଜାତି ଫୁଲ ଆଣିଛି ।”

ହେଇ ଦେଖ, କିଏ ଆସିଛନ୍ତି ।

“ଆରେ ଶେଖରବାବୁ କେତେବେଳୁ ! ମୋ’ର ଟିକିଏ ଡେରି ହୋଇଗଲା, କ୍ଷମା କରିବେ । ଦିଲ୍ଲୀରୁ କେବେ ଫେରିଲେ !” ଖବର କାଗଜରେ ତା’ର ଫଟୋଟି ଦେଖି, “ଆରେ ଘୋଡ଼ା ଉପରେ ପୃଥ୍ୱୀରାଜ । କ’ଣ ସଯୁକ୍ତାଙ୍କ ସ୍ୱୟମ୍ବରକୁ ?

“ଅମିତା ! ଏଣିକି ଶେଖର ଏଇଠିକି ଆସିବେ, ଦୁହେଁ ମିଶି ପଢ଼ାପଢ଼ି କରିବ । ସେ ଏବେ ପ୍ରଫେସରଙ୍କ ଘରକୁ ଯାଉଛନ୍ତି । ଏଣିକି ଦୁହେଁ ମିଶି ପ୍ରଫେସରଙ୍କ ପାଖକୁ ପଢ଼ିବାକୁ ଯିବ ।”

ଅମିତା ହର୍ଷୋତ୍‌ଫୁଲ୍ଲ ନୟନରେ ବୋଉ ମୁହଁକୁ ଚାହିଁ ଥିଲା ।

ଏବେ ପ୍ରତି ଦିନ ସନ୍ଧ୍ୟା ୭ଟା ବେଳେ ଶେଖର ଆସେ ଅରୁଣା ଦେବୀଙ୍କ ଘରକୁ । ଅମିତା ଧାଇଁ ଯାଏ ଗେଟ୍ ପାଖକୁ ତାକୁ ପାଛୋଟି ଆଣିବା ପାଇଁ । ଦୁହେଁ ମିଶି ପ୍ରଫେସରଙ୍କ ଘରକୁ ଯା’ନ୍ତି ।

ପବିତ୍ର ଦୁର୍ଗାପୂଜାର ଅବ୍ୟବହିତ ମୁହୂର୍ତ୍ତ । ଶାରଦୀୟ ଅବକାଶକୁ ଚଳ ଚଳ ଉପଭୋଗ କରିବାର ପ୍ରୟାସ ନେଇ ପ୍ରତ୍ୟେକ ମାନବ ଉତ୍ଫୁଲ୍ଲିତ । ସୁଷୁପ୍ତିର କୋଳରେ ତନ୍ଦ୍ରାବିଜଡ଼ିତ ନୟନରେ ସକଳ ପ୍ରାଣୀ ଗୃହିଁ ରହିଛନ୍ତି ଆଗାମୀ ସକାଳର ନୂତନ ସୂର୍ଯ୍ୟର କୋମଳ ଆଭାକୁ ।

ଏ କ'ଣ ହେଲା ! ନିର୍ମଳ ଆକାଶରେ ମେଘ ମେଦୁରର ଗୁରୁ ଗମ୍ଭୀର ନାଦ, ଦିଗାଙ୍ଗନାର ଅଞ୍ଚଳ ଉହାଡ଼େ ବିଜୁଳି କନ୍ୟାର ଝଲକ, ବାରି ଧାରାର ଘନ ଘନ ତୂର୍ଯ୍ୟନାଦ, ସରଳ ମାନବ ପ୍ରାଣରେ ସତେ କି କୁଠାରାଘାତ କଲା ।

ବାତ୍ୟା—ବାତ୍ୟାର କରାଳ ଗ୍ରାସରେ ସୁନ୍ଦର ଧରା ଛିନ୍ନଭିନ୍ନ ହୋଇଗଲା । ଦେବୀ ଆରାଧନାର ସକଳ ଆଶା ପୋଛି ହୋଇଗଲା ସର୍ବଭକ୍ତ ପ୍ରାଣରୁ । ପୁଅକୁ ହରାଇ ବୃଦ୍ଧା ମାତା କାନ୍ଦୁଥିଲା ବାହୁନି ବାହୁନି । ଯୁବତୀ ବାମା ମୁଣ୍ଡ କୋଡ଼ୁଥିଲା ସ୍ୱାମୀକୁ ହରାଇ । ଆଦର ଯତ୍ନରେ ଝାଳ ବୁହାଇ ତିଆରିଥିବା ଝାଟି ମାଟିର କାନ୍ଥ ତଳେ ଜୀବନ ଦେଇଥିଲା ଚଷାପୁଅ କୁଟୁମ୍ବ ସହିତ ।

ଖବର କାଗଜରେ ବାତ୍ୟାର ବୀଭତ୍ସ ବର୍ଣ୍ଣନା ଦେଖି ଅମିତାର ଆକୁଳ ପ୍ରାଣ ଥରି ଉଠୁଥିଲା । ଭାବି ଯାଉଥିଲା ସେଇ ନାରକୀୟ ଘଟଣାର ଚିତ୍ରକୁ ଆଖି ଆଗରେ ରଖି । ମନ କହୁଥିଲା ଧାଇଁ ଯା'ନ୍ତାକି ଶୋଷିଲା ଓଠରେ ପାଣି ମୁନ୍ଦାଏ ଦେବା ପାଇଁ, ଭୋକିଲା ପେଟରେ ଦାନା ଗଣ୍ଡିଏ ଦେବା ପାଇଁ । ଧାଇଁ ଯା'ନ୍ତାକି ପୁତ୍ରହରା ମା'ର ଆଖିରୁ ଲୁହ ପୋଛି ଦେବା ପାଇଁ, ସ୍ୱାମୀ ହରା ସ୍ତ୍ରୀକୁ ଟିକିଏ ପ୍ରବୋଧନା ଦେବା ପାଇଁ ।

ଶେଖର ପାଖକୁ ଧାଇଁଗଲା ଅମିତା ।

କଲେଜର ସେବା ସଂସ୍ଥାର ସେକ୍ରେଟାରୀଙ୍କ ସହିତ ପରାମର୍ଶ କରି ଶେଖର ପ୍ରିନ୍ସିପାଲଙ୍କୁ ସମସ୍ତ ଘଟଣା ଅବଗତ କରାଇ ସାହାଯ୍ୟ କାମରେ କଲେଜର ଜାତୀୟ ସେବା ସଂସ୍ଥାକୁ ନିୟୋଜିତ କରିବା ପାଇଁ ଅନୁରୋଧ କଲା ।

ଏ ପ୍ରକାର ପଦକ୍ଷେପ ପାଇଁ ପ୍ରିନ୍ସିପାଲ ତାକୁ ଅନେକ ପ୍ରଶଂସା କଲେ ।

ଜାତୀୟ ସେବା ଦଳ ସାଥିରେ ଶେଖର ଓ ଅମିତା ସାହାଯ୍ୟ ସରଞ୍ଜାମ ଧରି ଜମ୍ମୁ ଅଞ୍ଚଳରେ ପହଞ୍ଚିଲେ ।

ରାସ୍ତା କଡ଼ରେ କୁଢ଼ କୁଢ଼ ଗୋରୁ, ମଣିଷଙ୍କ ଶବ, ମାଟି କାନ୍ଥ ତଳେ ଶବ, ବୃକ୍ଷ ଶାଖାରେ କଅଁଳା ବାଛୁରୀର ଶବ, ଆମ୍ବ ତୋଟାରେ ଘୂଳ ଘରର ଛପର, ଏଇ ସବୁ ବିଭତ୍ସ ଦୃଶ୍ୟ ଦେଖି ଦେଖି ହତୋତ୍ସାହ ହୋଇ ପଡ଼ୁଥିଲେ ସେମାନେ ।

ଲୋକମାନଙ୍କର ସେବାରେ ଅବହେଳା ନାହିଁ, ପରିଶ୍ରମର ବିରାମ ନାହିଁ । ଗାଁ ସଫେଇ, ନାଳ ପୋଖରୀ ସଫେଇ, ରାସ୍ତା ସଫେଇ ଇତ୍ୟାଦି ସବୁ କାମ କରି ଯାଉଥିଲେ ସେମାନେ ନିର୍ବିକାର ଚିତ୍ତରେ ।

ସାଥୀମାନଙ୍କ ଗହଣରେ ନିଜେ ଭାତ ରାନ୍ଧି, ଆଳୁ ସିଝେଇ, ରୁଟି କରି ପରଶି ଯାଉଥିଲି ଅମିତା । ଅସନା ହାତରେ ଗୋଲାପୀ ମୁହଁରୁ ଝାଳ ପୋଛିଦେଇ କୁନି ପିଲାମାନଙ୍କୁ ଡାଗିଦ୍ କରି କେତେ କଥା କହି ଯାଉଥିଲି ସେ । ଘରେ ଘରେ ବୁଲି ବିସ୍କୁଟ, ଗୁଣ୍ଡ ଦୁଧ, ଯୋଗ, ଗୁଡ଼ର ବାଣ୍ଟି ଯାଉଥିଲେ ସେମାନେ ।

ପରିଶ୍ରମର ତାଡ଼ନାରେ କୋମଳାଙ୍ଗୀ ଅମିତା ଟିକିଏ ଅବଶ ହୋଇ ପଡ଼ିଲେ ଶେଖର କହେ, "ଅମି ! ସୂର୍ଯ୍ୟୋଦୟର ମାଦକତାକୁ ଉପଭୋଗ କରିବାର ଆଶା ନେଇ ତୁମେ ବାଟ ଚାଲୁ ଚାଲୁ ରାତିର ମଧ୍ୟମ ପ୍ରହରରେ ଯଦି ପଛଘୁଞ୍ଚା ଦିଅ ତେବେ ହାରିଯିବ । କଷ୍ଟ ତ ଆସିବ, ତେବେ ଧୈର୍ଯ୍ୟର ସହିତ ତାକୁ ମୁକାବିଲା କରିବା ବୁଦ୍ଧିମାନର କାମ ।"

ଏଇ କଥା ପଦକରେ ଅମିତାର ପ୍ରାଣରେ ନବ ପ୍ରେରଣାର ଉଦ୍ରେକ ହୁଏ । ଶତ ଚେତନାର ମୋହ ନେଇ ସେ କାମରେ ଆଗେଇ ଯାଏ ହସିହସି ।

ପଶ୍ଚିମ ଆକାଶରେ ସୂର୍ଯ୍ୟ ଲୁଚିଗଲେଣି । ହାତ ଘଡ଼ିକୁ ଚାହିଁଲି ଅମିତା । ସାତଟା ବାଜିଲଣି । ସେବା ସଂସ୍ଥାର ପିଲାମାନେ କ୍ୟାମ୍ପକୁ ଫେରିଗଲେଣି । ସନ୍ତାନହରା ନାରୀର କରୁଣ କାହାଣୀ ଶୁଣୁ ଶୁଣୁ ଅଟକି ଯାଇଛି ଅମିତା । ଆଜି ଶେଖର ସାଥିରେ ଦେଖା ହୋଇନି । ସକାଳର ନିତ୍ୟକର୍ମ ସାରି ଅମିତା ଯେତେବେଳେ କାମରେ ବାହାରେ ପ୍ରଥମେ ପୁରୁଷ କ୍ୟାମ୍ପରେ ଶେଖରକୁ ଦେଖାକରି ତାକୁ ପରାମର୍ଶ ମାଗେ । ଆଜି ବି ସେ ଶେଖର ପାଖକୁ ଯାଇଥିଲି; ଶେଖର ତାକୁ କହିଲି "ଅମି ! ତୁମେ ଆଗରେ ଚାଲ, ଏଇ ଟିକିଏ ପରେ ମୁଁ ଯାଉଛି ।" ହେଲେ ଏଯାଏ ତାର ଦେଖା ନାହିଁ । କ'ଣ ହେଲା ? ଶେଖର ଠାରେ ଏଭଳି ବ୍ୟତିକ୍ରମ ଆଜି ପ୍ରଥମ କରି ଦେଖୁଛି ଅମିତା ।

ମନ ତା'ର ଛଟପଟ ହେଲା । ତାଙ୍କ ପାଖରେ ଯାହା ପଦାର୍ଥ ଗଚ୍ଛିତ ଥିଲା ଆଜି ସବୁ ସରିଗଲା । ଏଠି ସେମାନଙ୍କର ଆଉ କାମ ନାହିଁ । କାଲି ପ୍ରଭୁଷରୁ ସେମାନେ ଫେରିବେ କଟକ । ଏଇ କେଇଦିନ ଭିତରେ ଏ ଗାଉଁଲି ଦ୍ୱୀପାଞ୍ଚଳରେ ଅମିତା ସମସ୍ତଙ୍କ ପାଖରେ ବେଶ୍ ପରିଚିତ ହୋଇ ଯାଇଥିଲି ତା'ର ବ୍ୟବହାର ଯୋଗୁ । ତେଣୁ ସେଠାକାର ସ୍ତ୍ରୀ ଝିଅ ବୋହୂମାନେ ତାକୁ ଅନୁରୋଧ କରି କହୁଥିଲେ ଫେରିଲାବେଳେ ତାଙ୍କ ଘରଆଡ଼େ ଟିକିଏ ବୁଲି ଆସିବା ପାଇଁ ।

ଅମିତା ମନରେ ଏଇ କଥା ଥିଲେ ବି ସେ ନିରୁପାୟ । ଶେଖରକୁ ଦିନେ ସେ ଏହା କହିବାରୁ ଶେଖର କହିଲା, "ହେଉ ଫେରିବାର ପୂର୍ବଦିନ ଆମେ ପୁଣି ଥରେ ଲୋକମାନଙ୍କୁ ଦେଖା କରି ଯିବା । ହେଲେ ଆଜି ଶେଷ ଦିନ ଥିଲେ ବି ଏ ଇପରି ଭାବରେ କଟିଲା । ମନେ ମନେ ବ୍ୟସ୍ତ ହୋଇ ପଡ଼ୁଥିଲା ଅମିତା ।

ସହସା ସେ ମହିଳା କ୍ୟାମ୍ପକୁ ନ ଯାଇ ପୁରୁଷ କ୍ୟାମ୍ପରେ ପହଞ୍ଚିଲା । କ୍ୟାମ୍ପର ଅନ୍ୟ ପିଲାମାନେ ନିଜ ନିଜର ଜିନିଷପତ୍ର ସଜାଡ଼ିବାରେ ବ୍ୟସ୍ତଥିଲେ । ସେମାନଙ୍କ ଭିତରେ ଶେଖରକୁ ତନ୍ନ ତନ୍ନ କରି ଖୋଜି ଯାଉଥିଲେ ତାର ଆଖି ଯୋଡ଼ାକ ।

ସରୁ ବେଡ୍‌ସିଟ୍ ଉପରେ ଶେଖର ଚୌଧୁରୀର ଅବଶ ଶରୀର । ମୁଣ୍ଡ ପାଖରେ ଲଣ୍ଠନଟି ଦିକ୍ ଦିକ୍ ହୋଇ ଜଳୁଛି । ପାଖରେ ଗିଲାସେ ପାଣି ଆଉ ଲେମ୍ବୁ ୨ ଖଣ୍ଡ । ଅମିତା ତରତର ବେଗରେ ପହଞ୍ଚିଲା ଶେଖର ପାଖରେ । କପିପନ୍ତି ତା' ମୁଣ୍ଡ ଉପରେ ହାତ ବୁଲାଇ ଆଣିଲା । ଖୁବ୍ ତାତ, ହାତ ପୋଡ଼ି ଯାଉଛି ।

"ଏ ତୁମର କ'ଣ ହେଲା ଶେଖର ? ଲୁଚେଇ ଲୁଚେଇ ଶରୀରକୁ ତୁମେ କାହିଁକି ଏତେ କଷ୍ଟ ଦେଉଛ ? ତୁମର ଦେହ ଭଲ ନାହିଁ । ସକାଳେ ମୋତେ କହୁଥିଲେ କ'ଣ କ୍ଷତି ହୋଇ ଥାନ୍ତା—ତୁମେ କ'ଣ ମୋତେ ଏତେ ପର ବୋଲି ଭାବିଲ !" କାନ୍ଦି ଉଠିଲା ଅମିତା । ପ୍ରାଣ ତା'ର ବାହୁନି ଉଠିଲା ଗୁମୁରି ଗୁମୁରି । ଝରଝରରେ ଦୁଇ ଆଖିରୁ ବୋହି ପଡୁଥିଲା ଉଷ୍ମ ଲୋତକର ଦୁଇଟି ଧାର । ଅନ୍ୟ କେହି ନ ବୁଝିଲେ ବି ଶେଖର ଚୌଧୁରୀର ଦୁଇଟି ଦୁର୍ବଳ ନୟନ ବେଶ୍ ବୁଝି ପାରିଥିଲେ ଅମିତାର ପଳାସ ଓଠର ଅଭିବ୍ୟକ୍ତି ।

ପ୍ରଭାତ କାଳରେ ବୃକ୍ଷ ଶାଖାରେ ପକ୍ଷୀ ଯେଉଁଠି ସ୍ୱାଗତିକା ଗାଏ । ଧବଳ ଦେବାଳୟରେ ଶଙ୍ଖ, ଘଣ୍ଟ, ଘଣ୍ଟା ବାଜି ଉଠେ ସାୟଂ କାଳରେ ଯେଉଁ

ଭୂମିର ଅନନ୍ତ ଦୂରରେ ଆମ୍ରକୁଞ୍ଜରେ ଗୋପାଳ ପୁଅର ବଂଶୀ ବଳର୍ପା ଉଠେ ସେଇ ପଲ୍ଲୀ ଭୂଇଁର ଶ୍ରୀହୀନ ବକ୍ଷରେ ଏକ ଶ୍ରେଷ୍ଠ କୁଡ଼ିଆ ଘରେ ଲଣ୍ଠନଟିଏ ଜାଳି ଅମିତା ବସିଛି ଶେଖର ପାଖରେ । ଟାଇଫଏଡ଼୍‌ର ଜ୍ୱାଳାରେ ବ୍ୟତିବ୍ୟସ୍ତ ହୋଇ-ପଡ଼ିଛି ଶେଖର ।

ସନ୍ଧ୍ୟାବେଳେ ଡାକ୍ତର ନିରଞ୍ଜନ ମହାପାତ୍ର ଆସିଥିଲେ । ତାପମାନ ଯନ୍ତ୍ରରେ ଜର ମାପିଲେ । ଶେଖର ଦେହରେ ୧୦୪° ଜର । ଔଷଧ ଦେଇଗଲେ । କହିଗଲେ ଅନ୍ତତଃ ଜର ଟିକିଏ କମିବା ଯାଏ ମଥାରେ ପାଣି ପଟି ଦେବା ପାଇଁ । ଅବିଶ୍ରାନ୍ତ ଭାବରେ ଶେଖର ମଥାରେ ପାଣି ପଟି ଦେଇ ଚାଲିଛି ଅମିତା । ସରସତା ଉଭେଇ ଯାଇଛି ଚନ୍ଦ୍ର ମୁଖରୁ । ଆଖି ଲୁହରେ ବକ୍ଷ ଭିଜୁଛି ।

ରାତି ଅନେକ ହେଲାଣି । ଘଣ୍ଟଆଡ଼େ ନିରବତାର ଛାଇ । ଆଉ କେତୋଟି ମୂହୂର୍ତ୍ତ ପରେ ଶିବାଗଣ ଭୁକି ଉଠିବେ କେଉଁ ଏକ ନୂତନ ଆଶାର ସଙ୍କେତ ନେଇ ।

ଦ୍ୱିତୀୟା ତିଥିର ଅନ୍ଧାର ଘୁଞ୍ଚିଗଲାଣି ଅନେକ ବେଳୁ ।

ତୁମେ ସେମିତି ସ୍ଥିର ନିଶ୍ଚଳ ଭାବରେ ମୋ' ପାଖରେ ବସି ରହିଛ ଅମିତା । ବାପା ବୋଉଙ୍କର ଅଲଅଲି ଝିଅ ତୁମେ । ଶାରୀରିକ କଷ୍ଟ କ'ଣ ତୁମେ ଜାଣିନ । କର୍ତ୍ତବ୍ୟ ଗୁପରେ ପଡ଼ି ଏଠିକି ଆସି ସବୁ କାମ କରିଯାଉଛ ମେସିନ୍ ଭଳି । କେତେବେଳେ କେମିତି କ୍ଳାନ୍ତ ବୋଧ କରୁଥିଲେ ବି ଅସହାୟ ଜନତାର ସେବାରେ ଗୋଟିଏ ମୂହୂର୍ତ୍ତ ପାଇଁ ବି ଅବହେଳା କରିନ । କେବେ କୌଣସି କଥାର ପ୍ରତିବାଦ କରିନ ତୁମେ ।

ମୁଁ ଅସୁସ୍ଥ । ଏ କେଇଦିନ କେବଳ ବଞ୍ଚି ରହିଛି ତୁମର ଯୋଗୁ । ନିଜର ଦେହ ପା' ପ୍ରତି ଯତ୍ନ ନ ନେଇ ତୁମେ ଦିନରାତି ମୋ'ର ସେବା କରି ଚାଲିଛ ଜଣେ ଦକ୍ଷ ସେବିକା ଭଳି । ଏ ଜନ୍ମରେ ତୁମେ ମୋ'ର ପଡ଼ୋଶୀ ସାଥି । ପୂର୍ବ ଜନ୍ମରେ ମୁଁ ଭାବୁଛି ତୁମେ ମୋ'ର କେହି ଆପଣାର ଥିଲ । ତୁମେ କୌଣସି ଦିନ ଥରଟିଏ ପାଇଁ ବି ମୋ'ର କୌଣସି କଥା ଭାଙ୍ଗିନ ।

ମୁଁ ଠିକ୍ ଅନୁମାନ କରି ପାରୁଛି, ତୁମେ ଅନେକ କ୍ଳାନ୍ତ । ତୁମର ବିଶ୍ରାମ ଏକାନ୍ତ ପ୍ରୟୋଜନ । ଯାଅ ଟିକିଏ ଶୋଇ ପଡ଼ିବ, ଶରୀରକୁ ଆଉ କେତେ କଷ୍ଟ ଦେବ ! ମୁଁ ଏବେ ଠିକ୍ ଅଛି ।

ଏପରି ଅବସ୍ଥାରେ ତୁମକୁ ଛାଡ଼ି ମୁଁ ଶୋଇବି କପରି ? ଆଉ କ୍ୟାମ୍ପରୁ ଡାଃ ନିରଞ୍ଜନ ମହାପାତ୍ର ଆସିଥିଲେ । ସେ କହି ଯାଇଛନ୍ତି ମୁଣ୍ଡରେ ବାରମ୍ବାର ପାଣି ପଟି ଦେବା ପାଇଁ, ଏତିକି ଔଷଧ ଆଜି ରାତିରେ ଯାଇବା ପାଇଁ, ମୁଁ ଯଦି ବିଶ୍ରାମ ନେବି ତେବେ ସବୁ ଗୋଲମାଲ ହୋଇଯିବ । ମୋ'ର ଏତେ ପରିଶ୍ରମ ବୃଥା ହୋଇଯିବ । କାନ୍ଦି ଉଠିଲା ଅମିତା ।

ଆମ ଟିମ୍ ଫେରି ଗଲାଣି ୨ ଦିନ ହେବ । ସେତେବେଳେ ତୁମର ହୋସ ନଥିଲା । ଡାଃ ମହାପାତ୍ର ଆସି ସବୁ ବୁଝାସୁଝା କରୁଛନ୍ତି । ଆଜି ପ୍ରଥମ ଥର ପାଇଁ ତୁମର ସେବା କରିବାର ସୁଯୋଗ ପାଇଛି । ମୋତେ ସେଥିରୁ ବଞ୍ଚିତ କରନା Please.

ଅମି, ତୁମର ଯୁକ୍ତି ଖୁବ୍ ପିଲାଳିଆ । ଏବେ ବି ତୁମେ ତୁମର ଚପଳତାକୁ ପାରୋଶି ପାରିନ । ମୁଁ ତୁମର ସହପାଠୀ ହେଲେବି ନିଶ୍ଚିତ ଭାବେ ତୁମ ଠାରୁ ବୟସ୍କ । ଦୁନିଆଁର ଖିଆ ମିତ ସମ୍ପର୍କରେ ମୋ'ର ଯଥେଷ୍ଟ ଧାରଣା ଅଛି । ଅନେକ ଘାତପ୍ରତିଘାତ ଦେଇ ମୁଁ ବଢ଼ିଛି, କେତେକ ଶ୍ରେଷ୍ଠ ବଡ଼ ଘଟଣାର ସମାଧାନ ମୁଁ କରିଛି ।

ଏ ସୁବିସ୍ତୃତ ଦୁନିଆଁର ଆଖି ଖୁବ୍ ଶ୍ରେଷ୍ଠ । ଆମରି ଏଇ ନିଷ୍କପଟ ପବିତ୍ର ସମ୍ପର୍କକୁ ଦୁନିଆଁ ଚିତ୍ରଣ କରିବ ଅନେକ ରଙ୍ଗରେ । ତୁମେ ଅନେକ କଷ୍ଟ ପାଇବ । ମନରେ ସେଥିପାଇଁ ଯେଉଁ କ୍ଷତ ସୃଷ୍ଟି ହେବ ତାହା ଲିଭିବନି ସାରା ଜୀବନ ପାଇଁ । କୋମଳ ପ୍ରାଣ ତୁମର ହାଃ ହାଃ କାର କରି ଉଠିବ । ସେ ବିଷାଦ ମୁହୂର୍ତ୍ତଗୁଡ଼ିକୁ ଗଣି ଗଣି ତୁମର ଦିନ ବିତିବ ସିନା, ଦୁନିଆଁର ଏଇ ଅଯଥା ବୋଝକୁ ଲଘବ କରିବା ପାଇଁ ତୁମେ ସକ୍ଷମ ହୋଇ ପାରିବନି । ମୋ'ର ଶ୍ରେଷ୍ଠ ଅନୁରୋଧ ରଖ, ଯାଅ ଆଉ ଘରେ ଲଣ୍ଠନଟି ଜଳାଇ ଦେଇ ଟିକିଏ ଅବଶ ଶରୀରକୁ ବିଶ୍ରାମ ଦିଅ । ଶେଖର ଚାହିଁଲା ଅମିତାର ଶୁଖିଲା ମୁହଁକୁ ।

ଆଦ୍ୟ ଆଷାଢ଼ର ମେଘୁଆ ଆକାଶ ଭଳି ଫୁଲି ଉଠୁଥିଲା ଅମିତାର ଗୁହ୍ନ ମୁହଁ । ଉପାଣିଆ ନୀଳ ଆଖିରେ ଶ୍ରାବଣର ବନ୍ୟା । ଥରି ଉଠୁଛି ଗୋଲାପି ଅଧର ।

କି ଭାଷାରେ ସେ ତା'ର ଅନ୍ତରର ବ୍ୟଥା ଜଣାଇବ ଭାବି ପାରୁ ନଥିଲା । ଶେଖର ପ୍ରତି ତା' ହୃଦୟରେ ଅତି ଯତନରେ ବଢ଼ାଇ ଆଣିଥିବା ଆନ୍ତରିକତାର ଅଙ୍କୁରଟିକୁ ଏମିତି ଛିଣ୍ଡାଇ ଦେଇ ପାରିବନି ସେ । ଜୀବନର ପ୍ରଥମ ଫଗୁଣରେ ମନ,

ଆଉ ପ୍ରାଣକୁ ଶେଖର ପାଦ ତଳେ ଭେଟି ଦେଇ ସାରିଲା ପରେ ତା'ର ଆଉ କ'ଣ ଅଛି ?

ଅନେକ ଦ୍ୱନ୍ଦର ପାହାଡ଼ ଗୋଟିକ ପରେ ଗୋଟିଏ ଡେଇଁ ଯାଉଥିଲା ଅମିତା । ସମାଜ ଆଖିକୁ ଏତେ ଭୟ କରନ୍ତି ଶେଖର ! ମୁଁ ଜଣେ ଅବଳା, କାହିଁ ! ଏସବୁ ଭ୍ରାନ୍ତ ଧାରଣା ତ ମୋ' ମନକୁ କେବେ ଛୁଇଁ ପାରନି । ଶେଖର କ'ଣ ଭାବୁଛନ୍ତି ଆମର ଏ ସଂପର୍କ କେବଳ କଲେଜ ଆଉ କ୍ଲାସ ଭିତରେ ଆବଦ୍ଧ ? ଏହାର ସ୍ଥିତି କ'ଣ ସୁଦୂର ପ୍ରସାରି ନୁହେଁ ? ଏ କ'ଣ ଆମର ଯୁଗ ଯୁଗର ସଂପର୍କ ନୁହେଁ ? ତେବେ···ତେବେ ମୋ'ର ଆଶା କ'ଣ ମୃଗ ବାଲିରେ ମିଳେଇ ଯିବ ?

ଅମି ତୁମେ କାନ୍ଦୁଛ ? ଛି, ଯେଉଁମାନେ ଦୁର୍ବଳ ତାଙ୍କ ଆଖିରେ ଲୁହ ଶୋଭାପାଏ ।

ହଁ ମୁଁ ଦୁର୍ବଳ, ତୁମର ପାଇଁ ମୁଁ ଆଜି ନିଜକୁ ଦୁର୍ବଳ ବୋଲି ମନେ-କରୁଛି । ଦିନେ ମୁଁ ସବଳ ଥିଲି, ନାଚ କୁଦ ଖେଳି ବୁଲୁଥିଲି ସ୍ୱାଧୀନ ଭାବରେ । ଦିନେ ବି ଅହେତୁକ ଚିନ୍ତା ମୋ' ମନକୁ ସ୍ପର୍ଶ କରିପାରି ନଥିଲା । ତୁମ ସଂସ୍ପର୍ଶରେ ଆସିଲି । ଦିନେ ଦେଖିଲି ଦୁର୍ବଳତାର ରାହୁ ମୋ' ମନ ମଧ୍ୟରେ ପ୍ରବେଶ କରିଛି । କାହାର ବଳିଷ୍ଠ ବ୍ୟକ୍ତିତ୍ୱ ମୋତେ ଆକର୍ଷଣ କରୁଛି । ମୁଁ କ୍ରମେ ମୋ'ର ସ୍ୱାଧୀନତା ହରାଇ ବସୁଛି । ମନ ମୟୂରୀ ମୋ'ର ଚାହୁଁଛି ସେଇ ବଳିଷ୍ଠ ବ୍ୟକ୍ତିତ୍ୱର ନିବିଡ଼ ଆଶ୍ଳେଷ ଭିତରେ ହଜି ଯିବାକୁ । ଜାଣନି ତୁମେ, କାହାର ସେଇ ବଳିଷ୍ଠ ବ୍ୟକ୍ତିତ୍ୱ ଯାହାର ପାଦ ତଳେ ନିଜକୁ ସମର୍ପି ଦେଇ ମୋ'ର ନାରୀ ଜୀବନକୁ ସାର୍ଥକ କରିବି ବୋଲି ଆଶା ବାନ୍ଧି ବସିଛି ? ଶେଖରର ହାତ ଧରି ପିଲାଙ୍କ ପରି କନ୍ଦି କନ୍ଦି ହୋଇ କାନ୍ଦି ଉଠିଲା ଅମିତା ।

ଜାଣେନି ତୁମେ ମୋତେ କ'ଣ ଭାବିବ । ବୁଝେନି ତୁମ ପ୍ରାଣରେ ମୋ' କଥାର କି ପ୍ରତିକ୍ରିୟା ସୃଷ୍ଟି ହେବ । ତେବେ ମୋ'ର ବିଶ୍ୱାସ, ତୁମକୁ ସତ୍ୟ କଥା କହି ମୁଁ କିଛି ଅନ୍ୟାୟ କରିନି ।

ଅମି, ଏଠି ନ୍ୟାୟ ଅନ୍ୟାୟର ପ୍ରଶ୍ନ ଉଠୁନି, କଥା ହେଉଛି ଯେ ଆମେ କେତେଦୂର ଏଇ ସମାଜକୁ ପ୍ରଭାବିତ କରି ପାରୁଛେ । ଏଇ ଅନ୍ଧ ସମାଜକୁ ନେଇ ଆମର ସ୍ଥିତି ।

ଜୀବନର ପ୍ରତିଟି ପ୍ରଭାତ ଆମ ପାଇଁ ବହନ କରି ଆଣିଥାଏ ନୂତନ ସଙ୍କେତ । ସବୁ ସଙ୍କେତର ଅର୍ଥ ବୁଝିବା ଆମ୍ଭ ପକ୍ଷରେ ସମ୍ଭବ ହୁଏନା । ଯାହା ଅବୋଧ ତାହା ଚିରନ୍ତନ ସତ୍ୟ । ସତ୍ୟର ଅପ୍ରଳାପ ଆମେ କ'ଣ କରି ପାରିବା ? ଦିନେ ତୁମେ ଆଉ ମୁଁ ଶ୍ରେଷ୍ଠ ଥିଲେ ଆମର ଜନ୍ମ କେଉଁଠି, ଆମେ ବଡ଼ ହେଲେ କେଉଁ ପାଣି ପବନରେ, ଆମର ପରିଚୟ ହେଲା କେଉଁଠି, ଆଉ ଏ ପରିଚୟର ପରିସମାପ୍ତି ହେବ କେବେ । କହି ପାରିବ ! ଏହା କିପରି ଏକ ମେକାନିକାଲ ଓ୍ୱେରେ ହୋଇ ଯାଉଛି ?

ଆଜି ମୁଁ ଅସୁସ୍ଥ, ମୋ' ଶେଯ ପାଖରେ ତୁମେ । କହି ପାରିବ ତୁମେ ଆଉ କେତୋଟି ମୁହୂର୍ତ୍ତି ପରେ ମୋ'ର ଯେ କିଛି ଘଟି ନ ଯିବ ?

ନା ନା ତୁମେ ଏ କଥା କୁହନା ଶେଖର, ଏତେ ବଡ଼ ଅଶୁଭ କଥା ତୁଣ୍ଡରେ ଧରନା । ମୁଁ ଗୁଲିଯାଉଛି, ତୁମେ ଟିକଏ ନିରବରେ ଶୋଇପଡ଼ । କାନ୍ଦ କାନ୍ଦ ମାଟିରେ ଲୋଟି ପଡ଼ିଲା ଅମିତା ।

ଶୀତ ଦିନର ଅପରାହ୍ନ । ମଥା ଉପରୁ ସୂର୍ଯ୍ୟ ପଶ୍ଚିମ ଆକାଶକୁ ଢଳିଲେଣି । ସୂର୍ଯ୍ୟ ତେଜର ତୀବ୍ରତା କମି ଆସିଲାଣି । ଅମିତା ତାନ୍‌ପୁରାଟି ହାତରେ ଧରି ଡାକିଲା "ବୋଉ ରଘୁଆକୁ କହିଲୁ ରିକ୍‌ସା ଡାକିବ, ଟାଇମ୍ ହୋଇଗଲାଣି, କଳାବିକାଶ କେନ୍ଦ୍ରରେ ମୋତେ ଶୀଘ୍ର ପହଞ୍ଚିବାକୁ ହେବ ।"

"ତୁ ଫେରିବୁ କେତେବେଳେ" ? ଭିତରେ ଥାଇ ଅରୁଣା ଦେବୀ ପଚାରିଲେ ।

ଶେଖରକୁ ମୁଁ ଅନୁରୋଧ କରିଛି ଯିବାପାଇଁ, ସେ ନିଶ୍ଚୟ ଯିବେ । ଆମେ ସାଥୀ ହୋଇ ଫେରିବୁ । ଉତ୍ତର ଦେଲା ଅମିତା ।

ଆଜି କଳାବିକାଶ କେନ୍ଦ୍ରର ବାର୍ଷିକୋତ୍ସବ । ଅମିତା ଅନ୍ୟମାନଙ୍କ ସହିତ ମଞ୍ଚ ଉପରେ ସଂଗୀତ ପରିବେଷଣ କରିବ । ଖୋଲା ମଞ୍ଚ ଉପରେ ଗୀତ ବୋଲିବା ତା'ର ଆଜି ପ୍ରଥମ । ସମୟ ପନେଇ ଆସିଲାଣି । ମନ ତା'ର ଆନମନା ହୋଇ ଉଠିଲାଣି ।

କାଲି କଲେଜକୁ ଫେରିଲା ବେଳେ ସେ ଶେଖର ଚୌଧୁରୀଙ୍କୁ ଅନୁରୋଧ କରିଛି କଲାବିକାଶ କେନ୍ଦ୍ରକୁ ଯିବାପାଇଁ । ବିଦ୍ୟାୟନ ସାର ଉତ୍ସବରେ ଯୋଗ ଦେବାପାଇଁ ଶେଖର ତାକୁ ପ୍ରତିଶ୍ରୁତି ଦେଇଛି । ଏ ଉତ୍ସବରେ ତା'ର ଯୋଗଦାନ କେବଳ ଶେଖର ପାଇଁ । ମଞ୍ଚ ଉପରେ ସଙ୍ଗୀତ ପରିବେଷଣ ସମୟରେ ଶେଖର ତାକୁ ଦେଖି ଅନେକ ଖୁସି ହେବ, ତାକୁ କେତେ ପ୍ରଶଂସା କରିବ । ଏଇ ଧାରଣା ମନରେ ପୋଷଣ କରି ସେ ଖୁସିରେ ଉତ୍‌ଫୁଲ୍ଲିତ ହୋଇ ଯାଉଥାଏ ।

ମଞ୍ଚ ଉପରକୁ ଉଠି ଆସିଲା ଅମିତା ଦାସ । ଆଖି ତା'ର ଚତୁର୍ଦ୍ଦିଗକୁ ଲମ୍ବି ଯାଉଥିଲା । ଆଶାସ୍ମି ଆଖି ତା'ର ଫେରି ଆସିଲା ତାନ୍‌ପୁରା ଉପରକୁ ତା'ର ଇପ୍‌ସିତ ମଣିଷଟିକୁ ନ ପାଇ ।

ସଙ୍ଗୀତର ତାଲେ ତାଲେ ତାନ୍‌ପୁରାର ସରୁତାରଗୁଡ଼ିକ ଗୁଞ୍ଜରି ଉଠୁଥିଲେ ତା'ର ଚମ୍ପାକଢ଼ି ଆଙ୍ଗୁଠିର ସୂକ୍ଷ୍ମ ଆଘାତରେ । ତା' ବୀଣାଝଣା କଣ୍ଠ ନିସୃତ "ଶ୍ୟାମ ତୋ' ପ୍ରୀତି ବିନା କେମନ୍ତେ ମୁଁ ବଞ୍ଚିବିରେ" ଦର୍ଶକ ମଣ୍ଡଳୀକୁ ମୁଗ୍ଧ କରି ଦେଉଥିଲା ଯେପରି । କରତାଳି ଧ୍ୱନିରେ ଦର୍ଶକ ଗ୍ୟାଲେରୀ କଲ୍ଲୋଳିତ ହୋଇ ଉଠିଲା କିଛି ସମୟ ପାଇଁ । କ୍ରମେ ସଙ୍ଗୀତର ମଧୁର ମୁର୍ଚ୍ଛନା ଶିଥିଳ ହୋଇ ଆସିଲା ।

ଉତ୍ସବର ଅନ୍ତିମ ମୁହୂର୍ତ୍ତି । ଅନେକ ଉପହାର ସହିତ ଭାରାକ୍ରାନ୍ତ ମନକୁ ନେଇ ଧୀର ପଦରେ ସେ ସ୍ଥାନ ତ୍ୟାଗ କଲା ଅମିତା । ଗେଟ୍ ପାଖରେ ଶେଖରକୁ ଦେଖି ପାଦ ତା'ର ଅଟକି ଗଲା । ଥରେ ଶେଖର ମୁହଁକୁ ଚାହିଁ ତଳକୁ ମୁହଁ ପୋତିଲା ସେ ।

ରାତି ଅନେକ ହେଲାଣି । ଯେ ଯାହାର ପଥ ଧରି ଚାଲି ଯାଉଛନ୍ତି, ହେଲେ ଏ ଦୁହେଁ ନୀରବ । ତଳକୁ ମୁହଁ ପୋତି ଆଙ୍ଗୁଠିରେ ମାଟି ଉପରେ ଗାର କାଟି ଚାଲିଥିଲା ଅମିତା ।

ଅମି, ମୋ' ଉପରେ ରାଗିଲ ନା' କ'ଣ କରିବ କୁହତ ? ତୁମ କଣ୍ଠର ମଧୁରିମ ସଙ୍ଗୀତ ଶୁଣିବାକୁ ଆଗ୍ରହ ଆଉ ଉତ୍କଣ୍ଠା ଥିଲେ ବି ଠିକ୍ ସମୟରେ ଏଠି ଉପସ୍ଥିତ ହୋଇପାରି ନଥିବାରୁ ଦୁଃଖିତ । କହିଲା ଶେଖର ।

ମୁଁ ଏକ ଶୁଷ୍କ ବନାନୀ । ଦିନେ କିନ୍ତୁ ମୋ ମନ ଉପବନ ସବୁଜିମାରେ ଭରି ଉଠୁଥିଲା । ରଙ୍ଗୀନ ପୁଷ୍ପର ସୁରଭିରେ ପୃଥିବୀ ଆମୋଦିତ ହୋଇ ଉଠୁଥିଲା ।

ଝରଣାର କଲକାକଳୀ ମୋ' ବୁକୁରେ ଶିହରଣ ସୃଷ୍ଟି କରୁଥିଲି । ହଠାତ୍ ଦିନେ ସେହି କଲକାକଳୀ ନିସ୍ତବ୍ଧତାରେ ଲୀନ ହୋଇଗଲି । ସମୀରଣର ମୃଦୁ ଗନ୍ଧ ସଂଗୀତ ସ୍ଥଗିତ ହେଲା । ପ୍ରଳୟାଗ୍ନିର ପ୍ରଚଣ୍ଡ ଶିଖାରେ ଅରଣ୍ୟାନୀ ଦଗ୍ଧ ହେଲା । ମୁଁ ହୋଇଗଲି ଅଲୋଡ଼ା ପାଉଁଶ । ନୀରବ ହେଲା ଅମିତା ।

ମୋତେ କ୍ଷମା କର ଅମି, ବିଶ୍ୱାସ କର । କେଜାଣି, ତୁମେ ମୋତେ ବିଶ୍ୱାସ କରିବ କି ନା ଜାଣେନି । କିପରି ତୁମକୁ ବୁଝେଇବି ମୋର ଅନ୍ତରର ଭାଷା ? ପ୍ରତି କ୍ଷେତ୍ରରେ ପ୍ରତି କାର୍ଯ୍ୟରେ ମୁଁ ତୁମଠୁ ପ୍ରେରଣା ପାଇଥାଏ । ଜୀବନର ପ୍ରତିଟି ମୁହୂର୍ତ୍ତକୁ ମୁଁ ଯଥେଷ୍ଟ ଗୁରୁତ୍ୱ ଦେଇଥାଏ । ମୋର ଦୈନନ୍ଦିନ କାର୍ଯ୍ୟ ଭିତରେ ଟିଉସନ ହିଁ ପ୍ରଧାନ କାର୍ଯ୍ୟ ବୋଲି ତମେ ଜାଣ ।

ହୁଏତ ଗୋଟିଏ ଦିନ ମୁଁ ଅନାହାରରେ ରହି ଯାଇପାରେ । କୌଣସି ଦିନ କ୍ଲାସକୁ ନ ଯାଇପାରେ ହୁଏତ, କିନ୍ତୁ ଯଥେଷ୍ଟ କାରଣ ନଥାଇ ମୁଁ ଟିୟୁସନ ବନ୍ଦ କରି ପାରିବିନି । ଏକ ଦିଗରେ ମୋର ପାଠପଢ଼ା ପାଇଁ ଏହା ଏକମାତ୍ର ସମ୍ବଳ । ଅନ୍ୟ ଦିଗରେ ମୋ ଉପରେ ଦାୟିତ୍ୱ ଅଜାଡ଼ି ଦେଇଥିବା ଛାତ୍ରଟିର ଭବିଷ୍ୟତ—ଏଥିରୁ ମୁଁ କାହାକୁ ଅବହେଳା କରିବି କୁହ ?

—ମୋତେ କ୍ଷମା କରିଦିଅ ଶେଖର । ଏସବୁ ଅସୁବିଧା ମୁଁ ତମର ଜାଣି ନଥିଲି । ମୋ ଗୀତକୁ ତମେ ଖୁବ୍ ଭଲପାଅ । ଭାବିଲି ମୋତେ ମଞ୍ଚ ଉପରେ ଦେଖି ଅନେକ ଶ୍ରୋତାଙ୍କ ସଧରେ ଅସଂଖ୍ୟ କରତାଳିର ଧ୍ୱନି ମଧ୍ୟରେ ତମେ କେତେ ଖୁସି ହେବ । ସେଇଥି ପାଇଁ ତମର ଉପସ୍ଥିତି ମୁଁ ଏକାନ୍ତ ଭାବରେ ଚାହୁଁଥିଲି, କିନ୍ତୁ ସେ ଆଶା ମୋର ପୂରଣ ହେଲାନି । ତୁମର ଅନୁପସ୍ଥିତି ଅସହ୍ୟ ହେଲା ମୋତେ । ମନର ଉତ୍କଣ୍ଠା ମଉଳି ଗଲା । ହୃଦୟର ଆବେଗକୁ ଲୁଚେଇ ପାରିଲିନି । କଷ୍ଟ ଦେଲି ତୁମକୁ । ମୋତେ କ୍ଷମା କରିଦିଅ ।

ଶ୍ରାବଣର ବର୍ଷଣମୁଖର ଆକାଶ ଭଳି ଭାରି ହୋଇ ଆସୁଥିଲା ତାର ମୁଖମଣ୍ଡଳ । ଗୋଲାପୀ ଅଧର ଥରି ଉଠୁଥିଲା । ନଈଆର୍ଦ୍ର ଉଠାଣି ମେଘ ଭଳି ରହି ରହି ବାହାରି ଆସୁଥିବା କୋହକୁ ଚେଷ୍ଟା କରି ବି ରୋକି ପାରୁ ନଥିଲା ସେ । ଉତ୍ସବର ଉପହାର ଗୋଟି ଗୋଟି ହୋଇ ତଳେ ପଡ଼ି ମାଟିରେ ଲିଭି ଯାଉଥିଲା । ଅମିତା ଆଖିର ତତଲା ଲୁହ ଦୁଇ ଟୋପା ଝରିପଡ଼ିଲା ଶେଖରର ଚପଲ ପିନ୍ଧା ଖୋଲା ପାଦ ଉପରେ । ଚମକି ପଡ଼ିଲା ସେ ।

ତୁମେ କାନ୍ଦୁଛ ଅମି ! ମୋତେ ବିଶ୍ୱାସ କର । ତୁମ ସଙ୍ଗୀତକୁ ମୁଁ ଅନେକ ଶ୍ରଦ୍ଧା କରେ । ସେଇଥି ପାଇଁ ଆଜ ଶିଗ୍ରୁ ଟିୟୁସନ ସାରି ଏଠିକି ଧାଇଁ ଆସିଛୁ । ଦୂରରେ ଥାଇ ତୁମ ସଙ୍ଗୀତର ମୂର୍ଚ୍ଛନା ପ୍ରାଣଭରି ଉପଭୋଗ କରିଛି । ତୁମର ଉତ୍ତରୋତ୍ତର ଉନ୍ନତି ପାଇଁ ଠାକୁରଙ୍କୁ କେତେ ଜଣାଇଛି । କୁହ ଏହାଠାରୁ ଆଉ ଅଧିକ କ'ଣ ଚାହଁ ?

'ଶେଖର ! ତୁମେ କେତେ ମହାନ' । ସ୍ୱତଃ ବାହାରି ଆସିଲା ଅମିତା ପାଟିରୁ ।

ହଁ ରାତି ଅନେକ ହେଲାଣି । ମାଉସୀ ବ୍ୟସ୍ତରେ ଅପେକ୍ଷା କରିଥିବେ । ଚାଲ ଯିବା ।

**ଜାନୁୟାରୀ** ୨୬ ତାରିଖ; ଗଣତନ୍ତ୍ର ଦିବସ । ଇଣ୍ଟର କଲେଜ ବକ୍ତୃତା ପ୍ରତିଯୋଗିତା ଅନୁଷ୍ଠିତ ହେବ ରେଭେନ୍‌ସା କଲେଜରେ । ରେଭେନ୍‌ସାର ପ୍ରତିନିଧି ଶେଖର ଚୌଧୁରୀ ।

ଅଡ଼ିଟୋରିୟମରେ ଭିଡ଼ ଜମିଲାଣି ଅନେକ ବେଳୁ । ବକ୍ତୃତାର ବିଷୟ ବସ୍ତୁ—"ଆଧୁନିକ ଯୁଗରେ ସମାଜ ଉପରେ ବିଜ୍ଞାନର ପ୍ରଭାବ" । କେହି କେହି ବକ୍ତୃତା ସାରି ଅପସରି ଗଲେଣି । ମଞ୍ଚ ଉପରକୁ ହସି ହସି ଉଠି ଆସିଲେ ଶେଖର ଚୌଧୁରୀ । ଶ୍ରୋତାମାନଙ୍କୁ ନମସ୍କାର କରିସାରି ଆରମ୍ଭ କଲେ, "ଆଜି ଆମେ, ଆପଣମାନେ ସମସ୍ତେ ବିଜ୍ଞାନ ଦ୍ୱାରା ପ୍ରଭାବିତ ଏବଂ ପରିଚାଳିତ । ଆଧୁନିକ ଯୁଗରେ ବିଜ୍ଞାନକୁ ବାଦ ଦେଲେ ମଣିଷ ଜୀବନର ମାନେ କିଛି ହୁଏନା । ଭବିଷ୍ୟତ ଯାହା ହେଉନା କାହିଁକି ଏ ଯୁଗର ନୂତନ ଶିଶୁ ପୃଥିବୀର ପଥ ପ୍ରଦର୍ଶକ । ଦିନେ "ଫ୍ରାଇଂ କାର୍ପେଟ୍" ଏବଂ "ଆଲାଦିନ୍‌ସ ଲ୍ୟାମ୍ପ" ପୃଥିବୀକୁ ଚମତ୍କୃତ କରିଥିଲା । ଆଜି କିନ୍ତୁ କୃଷି, ଔଷଧ, ବ୍ୟବସାୟ ବାଣିଜ୍ୟ, ଗମନାଗମନ, ଘରବନ୍ଧନ, ଶିଳ୍ପ, ପ୍ରେସ, ଏବଂ ଜୀବନର ଆହୁରି ଅନେକ ବିଭାଗ ପାଇଁ ଆଧୁନିକ ପୃଥିବୀ ବିଜ୍ଞାନ ପାଖରେ କୃତଜ୍ଞ । ଭଲ ହେଉ ବା ମନ୍ଦ ହେଉ ଜଳ, ସ୍ଥଳ, ଆକାଶ ସବୁ କ୍ଷେତ୍ରରେ ବିଜ୍ଞାନ ଅସମ୍ଭବକୁ ସମ୍ଭବ କରି ପାରିଛି ।

ଗମନାଗମନ ଏବଂ ପରିବହନ ପାଇଁ ରେଳଗାଡ଼ି, ମଟର କାର, ସାଇକେଲ ବ୍ୟୋମଯାନ ଇତ୍ୟାଦି ବିଜ୍ଞାନର ଅବିସ୍ମରଣୀୟ ଦାନ । ବାଣିଜ୍ୟ ବ୍ୟବସାୟରେ ଅନେକ ଉନ୍ନତି ପରିଲକ୍ଷିତ ହେଉଛି । ଆମଦାନୀ ରପ୍ତାନୀ ଦ୍ରୁତ ଗତିରେ ବଢ଼ି ଚାଲିଛି । ବନ୍ୟା, ବାତ୍ୟା, ମରୁଡ଼ି ସମୟରେ ଶୀଘ୍ର ଏବଂ ସହଜରେ ଲୋକମାନଙ୍କୁ ସାହାଯ୍ୟ ଯୋଗାଇ ଦିଆଯାଇ ପାରୁଛି । ଟେଲିଗ୍ରାଫ୍, ଟେଲିଫୋନ ଏବଂ ରେଡ଼ିଓ ମାନବର ଜୀବନକୁ ଅନେକ ପରିମାଣରେ ପ୍ରଭାବିତ କରି ପାରିଛି ।

ଇଲେକ୍ଟ୍ରିକ୍‌ର ଉଦ୍ଭାବନ ମାନବ ଜୀବନକୁ ସରସ ସୁନ୍ଦର କରି ପାରିଛି । ଇଲେକ୍ଟ୍ରିକ୍ ଆଧୁନିକ ମାନବକୁ ଶୀତ, ଆଉ ଗରମରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ରୋଷେଇ କରିବା, ଗରମ କରିବା, ଥଣ୍ଡା କରିବା, ସଫା କରିବା ଇତ୍ୟାଦି ଅନେକ କାମରେ ସାହାଯ୍ୟ କରୁଛି, ଏହା କ'ଣ ବିଜ୍ଞାନର ଏକ ମହତ୍ତ୍ୱ ଦାନ ନୁହେଁ କି ?

ମେଡ଼ିସିନ ବିଜ୍ଞାନର ଆଉ ଏକ ବଳିଷ୍ଠ ଦାନ ! ପ୍ରତିଦିନ ମେଡ଼ିସିନ୍ ପାଇଁ ଗବେଷଣା ଚାଲିଛି, ଅନେକ ଦୁଃସାଧ୍ୟ ରୋଗ ପାଇଁ ନୂଆ ନୂଆ ମେଡ଼ିସିନ୍ ଉଦ୍ଭାବନ କରାଯାଇଛି; ଯାହା ଫଳରେ ମାନବ ଅନେକ ଦୁରାରୋଗକୁ ଜୟ କରି ପାରିଛି ।

ଟ୍ରାକ୍ଟରର ଉଦ୍ଭାବନ ଭାରତୀୟ କୃଷି ପାଇଁ ବିଜ୍ଞାନର ଆଉ ଏକ ମହତ୍ତ୍ୱ ଉପହାର । ଏହା ବ୍ୟତୀତ ବିହନ, ସାର, ଗଛ ପତ୍ର ଉପରେ ବିଜ୍ଞାନର ଗବେଷଣା କୃଷି ଉପରେ ବିଶେଷ ପ୍ରଭାବ ପକାଇ ପାରିଛି । ସିନେମା, ଗ୍ରାମୋଫୋନ, ରେଡ଼ିଓ, ଟେଲିଭିଜନ ଇତ୍ୟାଦି ମାନବର ମନୋରଞ୍ଜନରେ ଅନେକ ସହାୟକ ଉପାଦାନ ।

ଏବେ ବୈଜ୍ଞାନିକମାନେ ଲାବୋରେଟୋରୀରେ ଜୀବନ ସୃଷ୍ଟି କରିବାରେ ସକ୍ଷମ ହୋଇ ପାରିଛନ୍ତି । ଡାଃ ପାଟ୍ରିକ୍ ଏବଂ ଡାଃ ରବର୍ଟ ଯୋଡ଼ର୍ଙ୍କ ଚେଷ୍ଟାରେ ପୃଥିବୀର ପ୍ରଥମ ଟେଷ୍ଟଟ୍ୟୁବ୍ ଶିଶୁ ଝିଅ ଲୁଇସ୍ ଦୁନିଆଁର ଆଲୋକ ଦେଖିବାର ସୁଯୋଗ ପାଇଲା ।

ବଡ଼ ବଡ଼ ଜାହାଜ ଆବିଷ୍କୃତ ହେବା ଦ୍ୱାରା ଜଳଭାଗ ଉପରେ ମାନବ ତା'ର ପ୍ରଭୁତ୍ୱ ବିସ୍ତାର କରି ପାରିଲା । ଏହାଦ୍ୱାରା ଦେଶ ଦେଶ ମଧ୍ୟରେ ବାଣିଜ୍ୟିକ ସମ୍ପର୍କ ବୃଦ୍ଧି ପାଇଲା ।

ଆକାଶ ପଥ ଉପରେ ମାନବ ତା'ର ବିଜୟାଧିକାର ସାବ୍ୟସ୍ତ କରି ପାରିଲାଣି । ବ୍ୟୋମଯାନ, ରକେଟ୍‌ର ଉଦ୍ଭାବନ ଫଳରେ ଆଧୁନିକ ମାନବ ସମୟକୁ ଜୟ କରି ପାରିଛି । ରକେଟ୍‌ର ଉଦ୍ଭାବନ ବିଜ୍ଞାନର ଏକ ଅତୁଳନୀୟ ଦାନ ।

ଯେଉଁ ଚନ୍ଦ୍ରକୁ ଅମେ ଦେବତା ବୋଲି ପୂଜା କରୁଛୁ ସେଇ ଚନ୍ଦ୍ର ପୃଷ୍ଠରେ ଆଜିର ମାନବ ପାଦ ଦେଇ ନାନା ପରୀକ୍ଷାନିରୀକ୍ଷା ଚଳାଇଛି । ଆର୍ମଷ୍ଟ୍ରଙ୍ଗ୍ ପୃଥିବୀର ପ୍ରଥମ ମାନବ ଯେ ଚନ୍ଦ୍ରପୃଷ୍ଠରେ ପ୍ରଥମେ ପାଦ ରଖିଥିଲେ ।

ବିଜ୍ଞାନ ଆମକୁ ଯେତକି ସୁଖ ଦେଇଛି, ସେତିକି ଦୁଃଖ ବି ଦେଇଛି । ଆଣବିକ ଶକ୍ତି ମଣିଷର ଉପକାର ଏବଂ ଅପକାର ଉଭୟ ପାଇଁ ଦାୟୀ । ଏହା ରୁକ୍ଷ ମରୁଭୂମିକୁ ଶସ୍ୟଶ୍ୟାମଳା କରି ପାରୁଛି, ପୃଥିବୀକୁ ଶିଳ୍ପ ସମୃଦ୍ଧ କରି ପାରୁଛି । ଏଇ ଆଣବିକ ଶକ୍ତି ଆଟମ୍‌ବମ୍‌, ଏବଂ ହାଇଡ୍ରୋଜେନ୍ ବମ୍ ସୃଷ୍ଟି କରି ପାରିଛି ଯାହା ଦିନେ ମାନବ ସମାଜର ଧ୍ୱଂସର କାରଣ ହେବ ।

ଘନ ଘନ କରତାଳିରେ ଅଡିଟୋରିୟମ ଥରି ଯାଉଥିଲା । ସଭିଙ୍କ ମୁହଁରେ "ସାବାସ୍ ଶେଖର ଚୌଧୁରୀ ।"

ବିକାଶ ରାୟଙ୍କୁ ଏସବୁ ଅତି ମାତ୍ରାରେ ଶ୍ରୁତିକଟୁ ହେଉଥିଲା । କ୍ରମେ ଅସ୍ଥିର ହୋଇ ପଡ଼ୁଥିଲା ସେ । ତାକୁ ସମର୍ଥନ ଜଣାଇ ବାଜେ ମନ୍ତବ୍ୟ ଦେଉଥିବା କେତେଜଣ ସାଥିଙ୍କୁ ଧରି ସେ ଅଡ଼ିଟୋରିୟମରୁ ବାହାରକୁ ଆସିଲା ।

ପ୍ରତିଯୋଗୀତା ଶେଷ ହେଲା । ପ୍ରଶଂସା ପତ୍ର ଧରି ଅଧ୍ୟକ୍ଷଙ୍କ ପଛେ ପଛେ ଆସୁଥିଲା ଶେଖର ଚୌଧୁରୀ ।

ବିକାଶ ରାୟ ତା'ର ସାଥିମାନଙ୍କ ସହିତ ଶେଖର ଚୌଧୁରୀର କୁଶପୁତ୍ତଳିକା ଦାହ କରୁଥିଲା । ତାହା ଅଧ୍ୟକ୍ଷଙ୍କ ଦୃଷ୍ଟିକୁ ଆସିଲା । ବିକାଶ ରାୟଙ୍କୁ ପାଖକୁ ଡାକି ଅଧ୍ୟକ୍ଷ କହିଲେ, "ତୁମେ ପରସ୍ପରର ବନ୍ଧୁ, ତୁମେ ପରସ୍ପରକୁ ଆଦର କରିବା ଶିଖ । ଶେଖର ତ ତୁମର କିଛି ଅନିଷ୍ଟ କରେନି ! ତା'ଭଳି ପିଲା କେତେଜଣ ଥା'ନ୍ତି ? ତା'ଠାରୁ ତୁମର ଅନେକ ଶିଖିବାର ଅଛି । ତେଣୁ ହିଂସା ମନୋଭାବ ପରିହାର କରି ତାକୁ ବନ୍ଧୁ ଭାବରେ ଦେଖ । ତା' ନ ହେଲେ ତୁମକୁ ଏ କଲେଜ ଛାଡ଼ିବାକୁ ହେବ ।"

ସଂଧ୍ୟା । ଶେଖରର ମାଈଁ ହେମାଙ୍ଗିନୀ ରୋଷେଇ ଆରମ୍ଭ କରୁଥିଲେ । ଦେବଲ ଦେବଲେ କାରଣ୍ଡାକୁ ଆସି ବାହାରକୁ ଚାହିଁଦେଇ ପୁଣି ଫେରି ଯାଉଥିଲେ

ଘର ଭିତରକୁ । ଗୁରୁବାର, ଆଜି ସେ ଅନେକ ବାଚ୍ଚ ଧିମାଭଳି ମନେ ହେଉଥିଲେ । ସମୟେ ସମୟେ-ବିରକ୍ତ ପ୍ରକାଶ କରୁଥିଲେ ସେ ।

ଘଣ୍ଟା ଆସି ୭ଟା ହେଲାଣି । ଇଏ କୁଆଡ଼େ ଗଲେ ଯେ ଏଯାଏ ବି ଦେଖା ନାହିଁ । କହି ଯାଇଛନ୍ତି ଅଫିସ୍‌ରୁ ଫେରଲେ ଚଣ୍ଡୀମନ୍ଦିର ଯିବା । କେମିତିକା ମନ କେଜାଣି ! ଘରେ ପଶିବା ନାହିଁ, ସ୍ନୋ, ପାଉଡ଼ର ସରିଗଲାଣି । ଟି. ଭି ଟିଏ କିଣା ହେବ ହେବ ବୋଲି ହୋଇ ପାରିଲାନି । କହୁଥିଲେ ମୋ' ହାତକୁ ଦି'ପଟ ସୁନାର ଚୂଡ଼ି କରିଦେବେ ବୋଲି ତାହା ବି ଏଯାଏ ହେଲାନି । ଆର ମାସରେ ମୁଁ ଆମ ଘରକୁ ଯିବି । ଭାଇ ଚିଠି ଦେଇଛନ୍ତି ମୋତେ ଆସି ନେବେ । ଅନେକ ଦିନ ପରେ ମୁଁ ଆମ ଘରକୁ ଯାଉଛି । ମୋତେ ଦେଖିବା ପାଇଁ ମୋ'ର କେତେ ସାଙ୍ଗ ସାଥି, ଖୁଡ଼ି, ଦେଢେଇ, ଭାଉଜମାନେ ସବୁ ଆସିବେ । ମୋ' ଷ୍ଟାଟସ୍ ବିଷୟରେ ତାଙ୍କୁ ମୁଁ କ'ଣ କହିବି ? ମୋ' ହାତରେ ସୁନା ଚୂଡ଼ି ଦେଖି ସେମାନେ କେତେ ଖୁସି ନ ହେବେ ? କହିବେ ହେମାଙ୍ଗିନୀ ! ତୁ ଯାହା ଏକା ଭାଗ୍ୟବତୀ । ଜ୍ୱାଇଁ ବାବୁ ଠିକ୍ ତୋ' ମନକାଣି ସବୁ ଖଞ୍ଜେଇଛନ୍ତି । ଏଥିରେ ତାଙ୍କର କ'ଣ ସମ୍ମାନ ବଢ଼ନ୍ତାନି !

ଅଫିସ୍ ଗଲାବେଳେ କହିଥିଲି, ସଅଳ ଆସିଲେ ମନ୍ଦିର ଯିବା, ଫେରିଲା ବାଟରେ ଏଇ ସବୁ ଜିନଷ ଦେଖିବା । ହେମାଙ୍ଗିନୀ ଆଗପଛ କେତେ କ'ଣ ଭାବି ଯାଉଥିଲେ । ହଠାତ୍ କବାଟର ଖିଡ଼ ଖିଡ଼ ଶବ୍ଦ ହେଲା । ଧାଇଁ ଆସି କବାଟ ଖୋଲିଲେ ହେମାଙ୍ଗିନୀ । ବିକାଶ ପାସ୍ଥ ନମସ୍କାର ଜଣାଇ କହିଲା", ମୁଁ ଶେଖରର ବନ୍ଧୁ, ବିକାଶ ପାସ୍ଥ । ଶେଖର ମୋ'ର ଅତି ଅନ୍ତରଙ୍ଗ ।

ହେମାଙ୍ଗିନୀ କହିଲେ, "ଶେଖର ଟିଉସନ ଯାଇଛି ।"

ମୁଁ ଜାଣେ । ସେଇଥି ପାଇଁ ମୁଁ ଆସିଛି ଆପଣଙ୍କୁ ତା' ସମ୍ପର୍କରେ କେତେକ ପରାମର୍ଶ ଦେବା ପାଇଁ । ଆଗ୍ରହରେ ତାକୁ ଘର ଭିତରକୁ ଡାକିଲେ ହେମାଙ୍ଗିନୀ ।

"ଶେଖର ଜଣେ ଭଲ ଛାତ୍ର, ଏହା ଆମ ବିଶ୍ୱବିଦ୍ୟାଳୟ ମାନୁଛି । ହେଲେ ତା'ର ଏ ବୟସରେ ଏପରି ଅଧୋଗତି ହେବବୋଲି ମୁଁ ଭାବି ନଥିଲି । ଆପଣ ହୁଏତ ମୋତେ ଭୁଲ ବୁଝି ପାରନ୍ତି ।" କହିଲା ବିକାଶ ।

"କୁହ କୁହ !" ଆଗ୍ରହରେ ହେମାଙ୍ଗିନୀ କହିଲେ ।

ଆମ କ୍ଲାସରେ ଅମିତା ବୋଲି ଝିଅଟିଏ ପଢ଼େ । ବାପା ତା'ର ଜଣେ ସାମାନ୍ୟ ସ୍ୱଳ୍ପ ବେତନ ଭୋଗୀ କିରାଣୀ । କଟକ ସହରରେ ଆଜିକାଲି ଘରଭଡ଼ା ଦେଇ, ଫ୍ୟାମିଲି ଚଲାଇ, ଗାଁକୁ ପଇସା ପତ୍ର ପଠାଇ ଝିଅର ଶାଢ଼ୀ, ସାୟା, ବ୍ଲାଉଜ ଯୋଗାଇ ତାକୁ ପାଠ ପଢ଼େଇବା କ'ଣ ସହଜ କଥା ? ହେଲେ ସେ ଝିଅ...... ... ।

"ହଁ କୁହ ଅଟକି ଗଲ କାହିଁକି ?" କହିଲେ ହେମାଙ୍ଗିନୀ ।

ସେ ଝିଅ ଯେଉଁଦିନଠାରୁ ଶେଖର ସଂସ୍ପର୍ଶରେ ଆସିଲାଣି ମୁଁ ଦେଖୁଛି ପ୍ରତିଦିନ ନୂଆ ନୂଆ ଡିଜାଇନ୍‌ର ପୋଷାକ ପିନ୍ଧି କଲେଜ ଆସୁଛି । ଶେଖର ଏତେ ପଇସା ସ୍କଲରସିପ ପାଉଛି, ତାକୁ ସବୁ କରୁଛି କ'ଣ ? ହୁଏତ ଅମିତାକୁ ଡ୍ରେସ କିଣିବାରେ ସାହାଯ୍ୟ କରୁଥିବ ।

"ଆଉ କ'ଣ କରୁଛି ଶେଖର ।" ପଚାରିଲେ ହେମାଙ୍ଗିନୀ ।

ଅନେକ ସମୟରେ ଦେଖାଯାଉଛି ଶେଖର ଆଉ ଅମିତା କ୍ଲାସକୁ ଆସୁନାହାନ୍ତି । ଆହୁରି ବି ଆମେ ବହୁତଥର ଦେଖିଲୁଣି; ସେ ଦୁହେଁ ଦୀର୍ଘ ସମୟ ପାର୍କରେ କାଟୁଛନ୍ତି; ନଦୀ ପଠାରେ ବସି ଗପ କରୁଛନ୍ତି; ଏକାଠି ସିନେମା ଯାଉଛନ୍ତି । ତା'ର ଏ ଅଧୋଗତି ପାଇଁ ମୁଁ ବିଶେଷ ଦୁଃଖିତ । ଏପରି ହେଲେ ତା'ର ଫ୍ୟୁଚର୍ ଭବିଷ୍ୟତ ଅନ୍ଧକାର ହୋଇଯିବ । ଏହା ମୋତେ ଅନେକ ବାଧୁଛି । ସେଇଥି ପାଇଁ ଆପଣଙ୍କ ପାଖକୁ ଧାଇଁ ଆସିଛି । ଏବେବି ସମୟ ଅଛି; ଆପଣ ତାକୁ ଫେରାଇ ଆଣନ୍ତୁ । ନଚେତ୍ ନେଡ଼ିଗୁଡ଼ କହୁଣିକୁ ବହିଗଲେ; ପରେ ପସ୍ତେଇବାକୁ ହେବ । ମୁଁ ଏଥର ଆସୁଛି ।

ହେମାଙ୍ଗିନୀଙ୍କ ମନରେ ନିଆଁ ଧରେଇ ଦେଇ ବିକାଶ ଚାଲିଆସିଲା । ହେମାଙ୍ଗିନୀ ଭାବୁଥିଲେ; "ଆଜି ଇଏ ଆସନ୍ତୁ; ସବୁ କଥା ସଫା ସଫା ପଡ଼ିଯିବ । ଯେମିତି ଭଉଣୀକୁ ମୁହଁ ଦେଇଛନ୍ତି ସେମିତି ଧାଇଁବେ । ମୋର କ'ଣ ଅଛି । "କେତେଥର କହିଲିଣି ଶେଖରକୁ ଅନ୍ୟ କେଉଁଠି ରହିବାର ବ୍ୟବସ୍ଥା କର । ମୋ' କଥା କାନରେ ନେଉନାହାନ୍ତି ।"

"ହେମାଙ୍ଗିନୀ···ହେମାଙ୍ଗିନୀ", ବାହାରୁ ଡାକଲେ ରାଧାଶ୍ୟାମ ବାବୁ । ହେମାଙ୍ଗିନୀ କବାଟ ଖୋଲିଲେ । ଘର ଭିତରକୁ ପଶୁ ପଶୁ ରାଧାଶ୍ୟାମ ବାବୁ କହିଲେ, "ବୁଝିଲ ହେମାଙ୍ଗିନୀ" ଗୋଟେ ଖୁବ୍ ଭଲ ଖବର ।

"ହଁ ସେଇ ଖବର ଶୁଣିବାରେ ତୁମେ ଆଜି ମୋର ମନ୍ଦର ଯିବା ମାଟି କରଦେଲ ।" ମୁହଁ ଫୁଲେଇ କହିଲେ ହେମାଙ୍ଗିନୀ ।

ମନ୍ଦର ! ହଁ ମନ୍ଦର ଯିବାଟା ଆଜି ନହେଲେ କାଲି ହେବ । ହେଲେ ଏ ଖବରଟା କେତେ ଦାମୀ ଜାଣିଛନା ?

"ସେ ଦାମୀ ଖବରରୁ ମୁଁ କଣ ପାଇବି । ତୁମେ ଦୁନିଆଯାକ ବୁଲି ଖବର ସଂଗ୍ରହ କରୁଥାଅ, ସେଥିରେ ମୋର ଯାଏ କେତେ ଆସେ କେତେ ? ତୁମେ ତ ମୋ ଖବର ବୁଝିଲନି !" କାନ୍ଦ କାନ୍ଦ ହୋଇ କହିଲେ ହେମାଙ୍ଗିନୀ ।

ଓ, ତୁମ ଖବର । ହଁ ହଁ ତୁମ ଖବର କିଏ ବୁଝିବ । ତୁମ ଖବର ମୁଁ ବୁଝିବିନି ତ ଆଉ ବୁଝିବ କିଏ । ବ୍ୟସ୍ତ ହୁଅନା, କାଲି ତା'ର ବ୍ୟବସ୍ଥା ମୁଁ କରୁଛି । ହଁ ଶୁଣ ଏଇ ଆମ ଶେଖର ପାଠରେ ଯେମିତି ସାଠରେ ବି ସେମିତି । କ'ଣ ଗୋଟେ ଶବ୍ଦ କରି ପଠେଇ ଦେଇଥିଲା ସେ ଜାତୀୟ ଚିତ୍ରାଙ୍କନ ପ୍ରତି-ଯୋଗୀତାରେ ପ୍ରଥମ ହୋଇଛି । ହେଇଟି ଆସନ୍ତା ମାସରେ ଦିଲ୍ଲୀ ଯିବ ସେ । ନଗଦ ଟ ୫୦୦୦ ଙ୍କା ଆଉ ରାଷ୍ଟ୍ରପତିଙ୍କଠାରୁ ପ୍ରଶଂସା ପତ୍ର ପାଇବ ସେ ପୁରସ୍କାର ସ୍ୱରୂପ ।

"ସେ ପାଇଲେ ମୋ'ର କ'ଣ ଦୁଃଖ ଯିବ ? ମୁଁ ସେଥିରୁ କ'ଣ ପାଇବି ?" କହିଲେ ହେମାଙ୍ଗିନୀ ।

"କ'ଣ ହେଲା, କ'ଣ ହେଲା ! ତୁମେ ପାଇବ ? କ'ଣ ପାଇବ, ହାତୀ ଘୋଡା ? ଆରେ ଆମ ଭଣଜା, ଆମପାଖରେ ରହୁଛି । ତା'ର ଭଲମନ୍ଦ ଆମ ଉପରେ । ସେ ନାଁ କଲେ କ'ଣ ଆମର ନାଁ ପଡ଼ିବନି ?" କହିଲେ ରାଧାଶ୍ୟାମ ବାବୁ ।

ହଁ ହଁ ନାଁ ପଡ଼ିବନି କମିତି । ସେ ନାଁ ଦିନା ଶୁଣି ଆସିଲି । ଏବେ ବାବୁ ଏଣେ କେଉଁ ନାଁ କମାଇଛନ୍ତି ଶୁଣିଲିଣି ? ବାରମ୍ବାର କହୁଛି ତା'ପାଇଁ କିଛି ଗୋଟେ ବ୍ୟବସ୍ଥା କର । କେବେ ଶୁଣୁଛ ମୋ' କଥା !

ଓ ହୋ, କ'ଣ କଥାଟା ନ କହି, ଏତେ ଗୌରଚନ୍ଦ୍ରିକା ବାଢୁଛ କାହିଁକି ।

ବାବୁ ଅମିତା ବୋଲି କେଉଁ ଝିଅ ସଙ୍ଗରେ······ ।

ହଁ ହଁ କହିଯାଅ, କହିଯାଅ ଯାହା ଶୁଣିଛ ସବୁ କହିଯାଅ । ଭୁଲ ହେଲ କାହିଁକି ?

କ'ଣ କହିବ, ଏତକବି ତୁମେ କ'ଣ ବୁଝି ପାରୁ ନ ଥିବ ?

ନାରୀମାନଙ୍କର ସ୍ୱଭାବ ସେଇୟା । ତୁମେ ଯାହା ବୁଝ ମୁଁ ତାହା ବୁଝେନା । ତୁମେ ଯାହା କହିବାକୁ ଚାହୁଁଛ ମୁଁ ତାହା ଢେର ଆଗରୁ ଜାଣେ ।

ନାହିଁ କେବେତ ମୋତେ କହୁନା ।

ତୁମକୁ କହିଲେ ଲାଭ କ'ଣ ହେବ ? ଅନ୍ୟଠାରୁ ଶୁଣି ତୁମେ ଯାହା ଭାବୁଛ, ମୋଠାରୁ ଶୁଣିଥିଲେ ବି ସେଇୟା ଭାବିଥା'ନ୍ତ । ଶେଖର ମୋତେ ସବୁ କଥା କହୁଛି । ଅମିତା ନାମ୍ନୀ ଝିଅଟିଏ ତା' ସାଙ୍ଗରେ ପଢ଼ୁଛି । ସେ ବି ଜଣେ ଭଲ ଛାତ୍ରୀ । ତା' ବାପା ମା' ଶେଖରକୁ ଅନେକ ଶ୍ରଦ୍ଧା କରନ୍ତି । ହଁ ଶେଖର ଆମର ଯେମିତି ପିଲା ନା ତାକୁ ସମସ୍ତେ ଶ୍ରଦ୍ଧା କରିବେ । ସେମାନେ ତାକୁ ଅନୁରୋଧ କରିଛନ୍ତି ତାଙ୍କ ଘରକୁ ଯାଇ ଝିଅଟି ସାଥିରେ ପଢ଼ାଶୁଣା କରିବା ପାଇଁ । ଛେଉଣ୍ଡ ପିଲାଟି, ଯାହାଠାରୁ ଶ୍ରଦ୍ଧା ଆଦର ପାଇଲା ଏକାବେଳକେ ତା'ର ହୋଇଗଲା । ଏଥିରେ କ୍ଷତି କ'ଣ ?

ତେବେ ମୁଁ ଯାହା ସବୁ ଶୁଣିଲି ।

ହଁ, ତମେ ସେଇପରି କିଛି ବାଜେ ପରଶ୍ରୀକାତର ଲୋକଙ୍କ ମୁହଁରୁ କଣ ଶୁଣିଥିବ । ହେଲେ ତାହା କହାର ମିଛ, ଶେଖରକୁ ମୁଁ ଭଲଭାବେ ଜାଣେ, ତା' ଉପରେ ମୋର ପ୍ରଗାଢ଼ ବିଶ୍ୱାସ ଅଛି । ଦେଖିବ ସେ ଦିନେ କେମିତି ମନିଷପରି ମଣିଷଟିଏ ହୋଇ ବାହାରିବ ।

ମୁଁ ସେ ସବୁ କିଛି ବୁଝେନା । ତୁମେ ତୁରନ୍ତ ଅନ୍ୟ କେଉଁଠି ତାର ରହିବାର ବ୍ୟବସ୍ଥା କର । ନଚେତ୍ କାଲି ସକାଳୁ ମୁଁ ଆମଘରକୁ ଚାଲିଯିବି ।

ହେ ମାଙ୍ଗୀନି ! ତୁମେ ପିଲାଟା ପ୍ରତି ଏତେ ନିଷ୍ଠୁର ହେଲେ ସେ କାହାର ହେବ ? ପିଲାଟିକୁ କେତେ କଷ୍ଟ ସହିବ ଯେ । ଆଉ ବା କେଇଟା ଦିନ ଆମଘରେ ସେ ରହିବ । ତା'ପରେ ସେତ ପୂର୍ଣ୍ଣିମାଙ୍କାରେ ଆମ ଉପରେ ନିର୍ଭର କରୁନ । ତୁମେ ତାକୁ ଟିକିଏ ଦୟାକର । ଦେଖୁଛ ଗୃହ ଗୃହ ଦାଣଟି ବର୍ଷ

କେମିତି ଗଡ଼ିଗଲା, ଠିକ୍ ଦଶବର୍ଷ ତଳେ ଆମର ବାଘାଘର ମହା ଧୁମ୍‌ଧାମ୍‌ରେ ହୋଇଥିଲା । କେତେ ବଡ଼ ଆଶାନେଇ ମୁଁ ତୁମକୁ ମୋ ଘରକୁ ଆଣିଥିଲି । ଏଯାଏ ତୁମ କୋଳରେ ପିଲାଟିଏ ଦେଖିଲିନ । ମୋର ଦୁର୍ଭାଗ୍ୟ । ଶେଖର ଅଛି, ମୁଁ ସେ ଦୁଃଖ ଭୁଲିଛି । ତୁମେ ଯଦି ତାକୁ ଅନ୍ତର କରିଦେବ ତେବେ ମୁଁ ବଞ୍ଚିବ କିପରି ?

ଟିଉସନ୍ ସାରି ଶେଖର ଫେରି ଆସିଥିଲା । ବାରଣ୍ଡା ଉପରକୁ ଉଠିଛି କି ନାହିଁ, ଶୁଣିବାକୁ ପାଇଲା, "ମୁଁ ଅନ୍ୟକଥା ଶୁଣିବାକୁ ଚାହେଁ ନ, ତୁମକୁ ଶେଖର ଅନ୍ୟତ୍ର ରହିବାର ବ୍ୟବସ୍ଥା କରିବାକୁ ହେବ । ଥରେ ତାଙ୍କ ପୁଅ ଆମଘରେ ରହି ପାଠ ପଢ଼ିବ ବୋଲି ମୋ' ଭାଇ ଆସି ତୁମକୁ କହିଲେ, ସେତେବେଳର କଥା କ'ଣ ତୁମର ମନେ ନାହିଁ ? ମୋ'ର ଠିକ୍ ମନେ ଅଛି । ସେଦିନ ମୋର ବଡ଼ଭାଇ ମୋ' ଘରୁ ମନ ଦୁଃଖରେ ଫେରିଗଲେ, ଏଯାଏ ସେ ଆଉ ଏ ଘରେ ପାଦଦେଇ ନାହାନ୍ତି । ତୁମ କଥାକୁ ତୁମେ ଏବେ ଆବୋରି ବସୁଛ କାହିଁକି ?"

ମନ ତା'ର ହା ହା କାର କରି ଉଠିଲା । ମାଇଁ ଚାହୁଁଛନ୍ତି ସେ ଆଉ ତାଙ୍କ ଘରେ ନ ରହୁ । ହଁ ତାଙ୍କ ଘରେ ମୋ'ର ବା କି ଅଧିକାର । ଯେତେଦିନ ଯାଏ ଦୟା କରିଥିଲେ ରହିଥିଲି, ଏବେ ମୋ' ଉପରୁ ତାଙ୍କର ଅନୁଗ୍ରହ ତୁଟିଗଲା । କାହିଁକି ତାଙ୍କ ଘରେ ରହି ତାଙ୍କ ମନରେ କଷ୍ଟ ଦେବି ? କାଲି ପ୍ରଭାତରୁ ମୋ'ର ବହିପତ୍ର ଧରି ହଷ୍ଟେଲକୁ ଚାଲିଯିବି । ନିରଜା ସିଙ୍ଗ୍‌ଲ୍ ରୁମ୍ ପାଇଛି । ସେ ମୋତେ ଅନେକ ଥର କହିଲାଣି ତା' ପାଖରେ ଆଡ୍‌ଜଷ୍ଟ୍ ହୋଇ ରହିବା ପାଇଁ । ତା'ର ଇଚ୍ଛା ମୁଁ ତା' ସାଥିରେ ରହିଲେ ତା'ର ପାଠପଢ଼ାଟା ଭାରି ମଜାରେ ହେବ । ସେଇଆ କରିବ । ସେ ମୋତେ ଖୁବ୍ ଆଦର କରେ ।

ଖଟିଆ ଉପରେ ଶୋଇ କଇଁ କଇଁ ହୋଇ କାନ୍ଦୁଥିଲା ଶେଖର ଚୌଧୁରୀ । ମାମୁଁଙ୍କ ସ୍ନେହ ଟିକକୁ ଭୁଲି ପାରିବନି ସେ ଜୀବନସାରା । ବାପା, ବୋଉ ଆର-ପୁରକୁ ଚାଲିଗଲା ପରେ ଏଇ ମାମୁଁ ହିଁ ତାର ସହାୟ ହୋଇଛନ୍ତି । ତାକୁ କୋଳେଇ କାଖେଇ ମଣିଷ କରିଛନ୍ତି, ତା'ର ଅଳଅର୍ଦ୍ଦଳୀ ସବୁ ସହିଛନ୍ତି । ତା'ର ଶୈଶବ ଅବସ୍ଥା ବେଳକୁ ମାମୁଙ୍କର ବାଘାଘର ହୋଇ ନ ଥିଲା । ଆଈ ସେତେ-ବେଳେ ବଞ୍ଚିଥିଲେ । ଏଇ କେଇ ବର୍ଷ ତଳେ ଆଈଙ୍କର ଦେହାନ୍ତ ହୋଇଗଲା । ହେଲେ ସେ ମୋତେ ଖୁବ୍ ଗେହ୍ଲା କରୁଥିଲେ । ମୁଁ ଯାହା ଯେତେବେଳେ ଚାହୁଁଥିଲି ମାମୁଙ୍କ ହାତରେ ଆଈ ସବୁ ଜିନିଷ ମଗାଇ ଦେଉଥିଲେ । ରାତିରେ ଖାଇସାରି

ଶୋଇଲାବେଳକୁ ମାମୁଁ ନାନା ପ୍ରକାର ଗପ କହି ମୋତେ ଶୁଆଇ ଦେଉଥିଲେ । ଏସବୁ କାଲି ପରି ଲାଗୁଛି ।

ତା'ପରେ କୁନ୍ କୁନ୍ ପାଦ ପକାଇ ମାଉଁ ଆସିଲେ । ମାମୁଁଙ୍କର ବାଘ ଘରର ଗୃହବନ୍ଦନ ପରେ ମୋତେ ମାମୁଁଙ୍କ ଶେଯରୁ ଅନ୍ତର କରାଗଲା । ମୋ'ର ସ୍ପଷ୍ଟ ମନେ ଅଛି ସେଦିନ ରାତିରେ ମୁଁ କପରି ମାମୁଁଙ୍କ ଶେଯ ପାଖରେ ବସି କାନ୍ଦୁଥିଲି । ମାମୁଁ ମୋତେ ନାନା ଆଡ଼ୁ ନାନା କଥା କହି ଭୁଲାଉଥିଲେ । ଶେଷରେ ମୋତେ କୋଳ୍‌କରି ସେ ଘରୁ ଉଠେଇ ନିଆଗଲା, ଆଉ ମୋତେ କୋଳରେ ପୂରାଇ ଶୋଇ ପଡ଼ିଲି । ହେଲେ ସେ ରାତି ମୋର କେବଳ କାନ୍ଦିବାରେ କଟିଛି ।

ରାତି ପାହିଲା । ମାମୁଁ ଗାଧୋଇ ପାଧୋଇ ଆସି ମୋତେ ଶେଯରୁ ଉଠାଇଲେ । ମୁଁ ଉଠି କାନ୍ଦିଲି, ଝୁମିଲି, ମାମୁଙ୍କୁ କହିଲି, "ତୁମ ସଙ୍ଗେ ମୋର କଟି, ମୋତେ କିଛି କହିବନି ।" ମାମୁଁ ତାଙ୍କ କାନଧରି କହିଲେ, "ମୋର ଭୁଲ ହୋଇଗଲା ।" ମୋର ରାଗ ଉଭେଇ ଗଲା, ମାମୁଁଙ୍କୁ ଚୁମାଟିଏ ଦେଇ ତାଙ୍କ କୋଳକୁ ଡେଇଁ ପଡ଼ିଲି ।

ଏତେ ଦିନର ମୋହକୁ ପଛରେ ପକେଇଦେଇ ଗଲେ, ରକ୍ତ ସବୁ ମୋ'ର ଜମାଟ୍ ବାନ୍ଧି ଯିବନି ତ ? ଶିରା ଧମନୀର ମୋ'ର ଚଳନ ଶକ୍ତି ହରାଇ ବସିବେନି ତ ? ହୃଦୟର ସ୍ପନ୍ଦନ ମୋ'ର ବନ୍ଦ ହୋଇଯିବନି ତ ? ମୋ'ର ଯାହା ହେଲେବି ମାମୁଁଙ୍କୁ ମୋତେ ଜନ୍ମାନ୍ତଶୂନ୍ୟ କରିବାକୁ ହେବ ।

କଲେଜରେ ନାମ ଲେଖାଇଲା ପରେ ହଷ୍ଟେଲରେ ସିଙ୍ଗିଲ ରୁମ୍‌ଟିଏ ମୋତେ ମିଳିଥିଲା । ମାମୁଁ ମୋତେ ରୁନ୍ଧି ରଖି ପାରିଲେନି, ମୁଁ ମାମୁଙ୍କ ମୋହ ଭୁଲି ପାରିଲିନି । ମୋର ହଷ୍ଟେଲରେ ରହିବା ହେଲାନି । ଏବେ ସେଇ ହଷ୍ଟେଲକୁ ମୁଁ ଆଦରି ନେବି । ଦୁଇଟି କାର ସ୍ୱପ୍ନ ଭିତରେ ହଜି ଯାଇଥିଲି ଶେଖର ଚୌଧୁରୀ ।

—"ତୁମେ ଆଜ ମୋ'ର ସବୁ କଥାକୁ ଫାଙ୍କିବା ପାଇଁ ଚେଷ୍ଟା କରୁଛ । ଆଛା କହିଲ ଦେଖି, ସେଦିନ ରଘୁ ହାତରେ ବହିଟି ଦେଇ ତରତର ହୋଇ ତୁମେ ଚାଲି ଆସିଲ କାହିଁକି ?"

—"ଆଗରୁ କହିଛି ଦେହ ଭଲ ନଥିଲା ବୋଲି । ଦେହ ମନ ଭଲ ନ ଥିଲେ କ'ଣ ପାଠ ପଢ଼ା ହୁଏ ?"

—"ହଁ ସତ କଥା । ତେବେ ତୁମେ ଘର ଭିତରକୁ ବୋଉକୁ ଏ କଥା ତ କହି ପାରିଥା'ନ୍ତ ।"

—"ସେଦିନ କାହିଁକି ଏକ ଅଜଣା ଭୟରେ ମୋ'ର ପାଦ ଚାଲୁଁ ଥିଲେ ବି ମନ କହୁଲାନି ଦି' ପାଦ ଆଗେଇ ଯିବାକୁ ।"

—"ମୋ'ର ସାମାନ୍ୟ ଅବହେଳା ପାଇଁ ମୋତେ ଆଜି ଏ ଦଣ୍ଡ ଭୋଗିବାକୁ ପଡୁଛି ।"

—"ଅମି ! ଏ ଦୁନିଆଁ ର ରଙ୍ଗମଞ୍ଚ କେଡ଼େ ବିଚିତ୍ର । ଏଇ ରଙ୍ଗ ମଞ୍ଚରେ ସମସ୍ତେ ତ ସଫଳ ଅଭିନେତା ହୋଇ ପାରିବେନି; ଯାହାର ଅଭିନୟ ମନ ଛୁଆଁ ବୁଝିବାକୁ ହେବ ସେହି ତା' କଳାକୁ ଠିକ୍ ମାର୍ଗରେ ପ୍ରତିପାଦିତ କରି ପାରିଛି । ସେ ହେବ ପ୍ରଶଂସାର ପାତ୍ର । ଯେଉଁ ଅଭିନେତା ତା'ର କଳାକୁ ମନ ଛୁଆଁ କରି ନ ପାରିଲା ସେ କାହାର ମାନସ ପଟ୍ଟରେ ପ୍ରତିବିମ୍ବ ସୃଷ୍ଟି କରିପାରିବନି । ସେ ହେବ ବିଫଳ, ପଥଭ୍ରାନ୍ତ ନାୟକ ।"

—"ତୁମ ମନସ୍ତତ୍ତ୍ୱ ବୁଝିବା ପାଇଁ ମୁଁ ସମ୍ପୂର୍ଣ୍ଣ ଅକ୍ଷମ ।"

—"ଏବେ ତୁମେ ତ କେବଳ ଏୟା ହିଁ କହିବ । ମୋତେ କକ୍ଷ ଚ୍ୟୁତ କରି ତୁମେ ଯେ କି ଲାଭ ପାଇଲ ମୁଁ ଜାଣି ପାରେନି ।"

—"ତୁମେ ତୁମ କକ୍ଷ ପଥରୁ ବାହାରି ଯାଇ ନାହଁ । ତୁମ ସରଳ ପ୍ରାଣରେ ଆଘାତ ଦେବାକୁ ମୁଁ କେବେ ଚାହିଁନି । ସାମାନ୍ୟ କଥାରୁ ତୁମେ ମୋତେ ଭୁଲ ବୁଝିଲ । ପ୍ରଫେସରଙ୍କ ଠାରୁ ତୁମର ପ୍ରଶଂସା ଶୁଣି ଶୁଣି ତୁମର ସାନିଧ୍ୟ ଲାଭ କରିବା ପାଇଁ ମୁଁ ଭାରି ଆଶାୟୀ ହୋଇ ପଡ଼ିଥିଲି । ସେ ଆଶା ମୋ'ର ପୂରଣ ହେଲା । ତୁମେ ମୋତେ ଚହ୍ନିଲ, ଆଦର କଲ ।"

—"କିଏ କହିବ ଏହା ତୁମ ହୃଦୟର ଅଭିବ୍ୟକ୍ତି ବୋଲି ? ନାରୀ ଲୀଳାମୟଙ୍କର ଏକ ବିଚିତ୍ର ସୃଷ୍ଟି । ପୁରୁଷର ଦାମ୍ଭିକତାକୁ କ୍ଷଣକେ ତରଳାଇ ଦେବାର କୌଶଳ ତାକୁ ବେଶ୍ ଜଣା ।"

—"ତୁମର ଏ ପ୍ରକାର ମନ୍ତବ୍ୟ ମୋ' ପାଇଁ ପ୍ରଯୁଜ୍ୟ ନୁହେଁ ଶେଖର । ମୋ' ପ୍ରତି ତୁମର ଯଦି ଏଇ ଧାରଣା ଥାଏ ତେବେ ମୋ'ର ଅନୁରୋଧ ଏ ଧାରଣା ତୁମେ ମନରୁ ପୋଛିଦିଅ ।"

—"ଅମି, ମୋତେ କ'ଣ ତୁମେ ପ୍ଲାଷ୍ଟିକ୍‌ର ଖେଳନା ବୋଲି ଭାବିଲ ? ମୋତେ ତୁମେ ଯେମିତି ମୋଡ଼ିବ ମୁଁ ସେମିତି ଘୁରିବି ?"

—"ନା' ନା' ଶେଖର ସେମିତି ନୁହେଁ । ମୁଁ ସବୁବେଳେ ଭବେ ତୁମ ହାତରେ ଖେଳନା ହେବା ପାଇଁ । ତୁମେ ଆଜି ମୋତେ ଭୁଲ୍ ବୁଝି ମୋ' ଠାରୁ ଦୂରେଇ ଯାଉଛ ।"

—"ମୋତେ ନିଃସ୍ୱ ଭାବି ତୁମେ ମୋ' ଠାରୁ ଦୂରେଇ ରହିବା ପାଇଁ ଯୋଜନା କରୁଛ । ଏହା କ'ଣ ମିଥ୍ୟା ?"

—"ତୁମେ ଏହା କହି ପାରୁଛ ଶେଖର ? କାନ୍ଦି ଉଠିଲା ଅମିତା ।"

ଆଜି ପବିତ୍ର କୁମାର ପୂର୍ଣ୍ଣିମା, ପ୍ରତିଦିନ ଏଇ କୁମାର ପୂର୍ଣ୍ଣିମା ଆସେ । ଅବିବାହିତ ଝିଅମାନଙ୍କର ଏକ ବଡ଼ ପର୍ବ ଏଇ କୁମାର ପୂର୍ଣ୍ଣିମା । ଏଇଦିନ କୁମାରୀ ଝିଅମାନେ ନବ ପରିଧାନରେ ଚନ୍ଦ୍ରଙ୍କୁ ପୂଜା କରିଥା'ନ୍ତି କାର୍ତ୍ତିକେୟଙ୍କ ପରି ବରଟିଏ ପାଇବା ପାଇଁ ।

ପଢ଼ା ଘରର ରୁଦ୍ଧ ଦ୍ୱାର ଭିତରେ କାନ୍ଦି ଉଠିଲା ଅମିତା । ନିଜ ହାତରେ କେତେ ଯତନରେ ତିଆରି କରିଥିବା ନିଡ଼ଟି ସେ ଆଜି ନିଜେ ଭାଙ୍ଗି ଚୂରମାର୍ କରି ଦେବ । ଜାଣେନି ସେ ତା'ର ପରିଣାମ କ'ଣ ହେବ । ହୁଏତ ତା'ର ହୃତ୍‌ପିଣ୍ଡ ବିଦୀର୍ଣ୍ଣ ହୋଇଯିବ । ଶରୀରରେ ସବୁ ରକ୍ତ କଣିକା ଏକାବେଳେକେ ଜମାଟ ବାନ୍ଧିଯିବେ । ହୁଏତ ଆଗ୍ନେୟଗିରିର ଲାଭା ତାକୁ ଅଚିରେ ଗ୍ରାସ କରିଯିବ । ସେ

ମିଶିଯିବ ଏଇ ମାଟିର ଦେହରେ ସବୁଦିନ ପାଇଁ । ସେଇଥିପା ହୁଅନ୍ତା କି ! ଅତୀତକୁ ରୋମନ୍ଥନ କରୁଥିଲା ଅମିତା ।

ମାଟି ମା' କେବଳ ବୁଝିବ ଅମିତାର ମରମ ତଳର ବ୍ୟଥା । ସେ କାହିଁକି ନିଜକୁ ଜାଳି ଜାଳି ନିଃଶେଷ କରୁଛି ସେ ହିଁ ଜାଣେ । କେହି ବୁଝିବେନି ତା'ର ଅନ୍ତର ତଳର ଦୁଃଖ । କେହି ଥରେବି ଜାଣିବାକୁ ଚାହିଁବେନି ଅମିତା ମନର ଅକୁହା କାହାଣୀ । ସେ ହୋଇଯିବ ସମସ୍ତଙ୍କର ଘାତପର । କ୍ରମେ ଅମିତାର ସ୍ନାୟୁଗୁଡ଼ିକ ଦୁର୍ବଳ ହୋଇ ପଡ଼ୁଥିଲେ ।

ବିକାଶ ଗୃହ ଅତି ନିଷ୍ଠୁର । ଏ ଦୁନିଆଁରେ ପାଞ୍ଚଜଣଙ୍କ ଭିତରେ ଜଣେ ହୋଇ ସୁଖରେ ଜୀବନ ବିତାଇବାର ମୋହକୁ ଧୂଳିସାତ୍ କରିଦେଲା ସେ । ଅମିତା ନୀରବରେ ହିସାବ କରିଯାଉଥିଲା ତା' ଭବିଷ୍ୟତର ଅନ୍ଧକାର ଦିନଗୁଡ଼ିକୁ ।

ବିକାଶ ସେଦିନ କଥା ପ୍ରସଙ୍ଗରେ ଅମିତାକୁ ସତର୍କ କରାଇ ଦେଇଛି ଯଦି ସେ ଶେଖରକୁ ବିଭାହୁଏ ତେବେ ଠିକ୍ ତା' ପରଦିନ ତା' ମଥାର ସିନ୍ଦୂର ଲିଭିଯିବ ସବୁଦିନ ପାଇଁ ।

ନା ନା ସେ ଏହା କେବେ ସହି ପାରିବନି, ସେ କେବେ ଏହା କରାଇ ଦେବନି । ଚିତ୍କାର କରି ଉଠିଲା ଅମିତା । ଶେଖର ! ପ୍ରାଣର ଶେଖର ମୋର ! ତୁମର କୋମଳ ଅମୂଲ୍ୟ ପ୍ରାଣକୁ ଅକାଳରେ ଝଡ଼ିଦେବାକୁ ମୁଁ ଦେବିନି । ତୁମ ଉପରେ ଅତ୍ୟାଚାର ମୁଁ ସହି ପାରିବନି । ଜୀବନ ମୋର ବ୍ୟର୍ଥ ହୋଇଯାଉ, ମୋ ମଥା ଉପରେ ଦୁନିଆର ଯେତେ ଝଡ଼ଝଞ୍ଜା ବହିଯାଉ ମୁଁ ପଥରପରି ସହିଯିବି । ହେଲେ ତୁମ ଜୀବନକୁ ନେଇ କେହିଜଣେ ଖେଳ ଖେଳୁ, ମୁଁ ତାହା ସହି ପାରିବନି । ତୁମେ ବଞ୍ଚିରୁହ ମୋର ଆଶାର ଦୀପାଳି ହୋଇ । ତୁମର ଆଲୋକରେ ମୋ ଜୀବନ ଆଲୋକିତ ହେଉଥିବ । ସେଥିପାଇଁ ଯେତେ କଷ୍ଟ ଆସୁ, ବିପଦ ଆସୁ ମୁଁ ସହିବାକୁ ପ୍ରସ୍ତୁତ । ତକିଆ ଉପରେ ମୁହଁ ରଖି କହିଁ କହିଁ ହୋଇ କାନ୍ଦି ଉଠିଲା ଅମିତା ।

ଦାଣ୍ଡଘରେ ଶେଖର ଚୌଧୁରୀର ପାଟି ଶୁଭିଲା । ଆଶ୍ଚର୍ଯ୍ୟ ହେଲା ଅମିତା । ଅନେକ ଦିନ ପରେ ଆଜି ତାଙ୍କ ଘରକୁ ଆସିଛନ୍ତି ଶେଖର । ସତରେ କଣ ଠାକୁରେ ମୋ ଡାକ ଶୁଣିଛନ୍ତି । ନିଜକୁ ସଜାଡ଼ି ନେଲା ସେ ।

କେତେ ସରଳ ଏଇ ଶେଖର । ଆଜି ନିଶ୍ଚୟ ତାଙ୍କ ମନ ଭିତରେ ମୋ ପାଇଁ ଅନେକ ପ୍ରଶ୍ନ ଧରି ଆସିଥିବେ । ଗୋଟିକ ପରେ ଗୋଟିଏ ପଚାରିଯିବେ ସେ

ମୋତେ । କ ଉତ୍ତର ଦେବି ମୁଁ ! ମୋ' ଆଖିର ଲୁହ ଦେଖି ଅନେକ ବ୍ୟସ୍ତ ହୋଇ ପଡ଼ନ୍ତେ ସେ । ମୋ ଲୁହକୁ ସେ କେବେ ସହି ପାରନ୍ତିନି ବୋଲି କେତେଥର କହିଛନ୍ତି ।

ଶେଖର ବଡ଼ଓଖା କରନ୍ତି । ଥରେ ବଡ଼ଓଷା ଦିନ ସେ ଧବଳେଶ୍ୱର ଯାଉଁକୁ ଗଲେ । ପୂର୍ବଦିନ ଆମର କଥା ହୋଇଥିଲା ଯେ ମୁଁ ତାଙ୍କ ସହିତ ଯିବି । ହେଲେ ସେଦିନ ସେ ମୋତେ ସଙ୍ଗରେ ନେଲେନି କି ଭୋଗ ଟିକିଏ ବି ଦେଲେନି । ଦୁଇଦିନ ପରେ ଯେତେବେଳେ ଆମ ଘରକୁ ଆସିଲେ ମୁଁ ତାଙ୍କୁ କିଛି ନକହି ଖାଲି କାନ୍ଦିଲି । ସେ ମୋତେ କହିଲେ, "ଅମି ତୁମେ କିଛି ନବୁଝି ଖାଲି ଟିକିଏ ଟିକିଏ କଥାରେ କାନ୍ଦିପକାଉଛ । ଏ ସବୁ ମୁଁ ଆଦୌ ଭଲ ପାଏନି । ତୁମେ ଯଦି ଏମିତି ପରି କାନ୍ଦିବ, ତେବେ ମୁଁ ଆଉ ତୁମ ଘରକୁ ଆସିବିନି ।" ଆଜି ବି ମୋତେ ସେଇକଥା କହିବେ ଅମିତା ଭାବି ଯାଉଥିଲା ମନେମନେ ।

ଘରର ଭିତରକୁ ପଶି ଆସିଲେ ଶେଖର କହିଲେ, "ଅମି ! କିପରି ଅଛ ? ଆଜି ତୁମମାନଙ୍କ କଥା ଟିକିଏ ମନେ ପଡ଼ିବାରୁ ଚାଲିଆସିଲି ।"

ଅମିତା ନୀରବରେ ତଳକୁ ମୁହଁ କରି ବସିରହିଲା । ଶେଖର କହିଲା, "ମୋତେ କହିବନି ବୋଲି ଶପଥ କରିଛ ନା କଣ ?"

"ଟିକିଏ ବସ ମୁଁ ଆସୁଛି ?" ଏତିକି କହି ଅମିତା ବାହାରକୁ ଚାଲିଗଲା ।

ଅମିତା ଚାଲିଯିବାପରେ ଆକାଶପାତାଳ କେତେ କ'ଣ ଚିନ୍ତା କରିଗଲା ଶେଖର । ଆଜି କୁମାର ପୂର୍ଣ୍ଣିମା । ଝିଅମାନଙ୍କର କେତେ ଖୁସିର ଦିନ । ତେବେ ଅମିତା ଏପରି କାନ୍ଦୁଛି କାହିଁକି ? ତା' ମୁହଁରୁ ସ୍ପଷ୍ଟ ଜଣାପଡ଼ୁଛି ଯେପରି ସେ ଅନେକ ବେଳୁ କାନ୍ଦୁଥିଲା । ମଉସା ମାଉସୀ କ'ଣ ତାକୁ କହିଛନ୍ତି ? ନା ସେମିତି ହୋଇ ନପାରେ । ସେମାନଙ୍କର ବଡ଼ ଭାଗ୍ୟ ଯେ ଅମିତା ପରି ଝିଅଟିଏ ପାଇଛନ୍ତି ସେମାନେ । ତେବେ କ'ଣ ତା' ଦେହ ଭଲ ନାହିଁ ? ଭାବନାର ଜମବର୍ଦ୍ଧମାନ ଗତିସହିତ ତାଳ ଦେଇପାରୁନଥିଲା ଶେଖର । ଟେବୁଲ ଉପରେ ଇତସ୍ତତ ପଡ଼ିଥିବା ଖାତା, କାଗଜ ସବୁ ଖେଳାଇ ଯାଉଥିଲା ଶେଖର ଅସାବଧାନତାରେ । ହଠାତ୍ ତାର ନଜର ପଡ଼ିଲା ଚୂରଭଙ୍ଗ ହୋଇ ପଡ଼ିଥିବା କାଗଜ ଖଣ୍ଡିକ ଉପରେ ଆଗ୍ରହରେ ସେଇଟିକୁ ଆସି ଖୋଲିଲା ସେ ।

ଶେଖର,

କାଗଜ କଲମ ଧରିବା ଆଗରୁ ଅନେକ ଭାବିଛି । ତୁମକୁ ଯେଉଁ ଭାଷାରେ ସମ୍ବୋଧନ କରିବ ବୋଲି ଦୀର୍ଘଦିନ ଧରି ପ୍ରୟାସ କରି ଆସୁଥିଲି ତାହା ଆଜି ମରୀଚିକାରେ ପରିଣତ ହୋଇଗଲା । ଆଜି ତୁମକୁ ଯେଉଁ ଭାଷାରେ ସମ୍ବୋଧନ କରୁଛି ତାହା ମନ ଆଉ ହୃଦୟ ନ ଗ୍ରହିଲେ ବି ମୁଁ ନାଗର ।

ମୋର ସବୁ ଆଶା ବାଲି ବନ୍ଧ ପରି ମିଳାଇଗଲା । ଯେଉଁ ଘରଟିକୁ ସରସ ସୁନ୍ଦର କରି ତୋଳି ଆଣୁଥିଲି ଦୀର୍ଘଦିନ ଧରି, ସେଇ ଆଦରର ଶ୍ରେଷ୍ଠ ଘରଟିକୁ ମୁଁ ନିଜ ହାତରେ ଭାଙ୍ଗି ଚୂରି ଛାରଖାର କରିଦେଲି ।

ମୋର ଗତିପଥ ବଦଳି ଗଲା । ଦିନେ ମୁଁ ଏକ ଶୀତତାପ ନିୟନ୍ତ୍ରିତ ପ୍ରଥମ ଶ୍ରେଣୀ ରେଲଡବାରେ ଯିବା ପାଇଁ ସ୍ଥାନ ସଂରକ୍ଷଣ କରିଥିଲି । କିନ୍ତୁ ମୁଁ ଷ୍ଟେସନରେ ପହଞ୍ଚିବାର ଅବ୍ୟବହିତ ପୂର୍ବରୁ ଟ୍ରେନ୍ ଷ୍ଟେସନ ଛାଡ଼ିଦେଲା । ପ୍ରଥମ ଶ୍ରେଣୀ ଡବାରେ ଯିବାର ମୋହ ଆଉ ମାନବିକତା ମୋର ମରିଗଲା । ମୁଁ ଚିର ପ୍ରତ୍ୟାଖ୍ୟାତ ହୋଇ ରହିଗଲି ଅନେକ ପଛରେ ।

ଜୀବନରେ ଷୋଳଟି ବସନ୍ତ ନିଃସଙ୍ଗତାରେ କଟାଇଲା ପରେ ଭାବିଥିଲି ଅବଶିଷ୍ଟ ସମୟତକ ତୁମରି ସାଥିରେ ବିତେଇଥାନ୍ତି । ହେଲେ ଏତେ ଭାଗ୍ୟ ମୋର କାହିଁ ?

ମୋତେ ଟିକେ ବୁଝିବାକୁ ଚେଷ୍ଟା କରିବ । କାହାର ପ୍ରରୋଚନା ମୋ ପ୍ରାଣରେ ରେଖାପାତ କରେ ନାହିଁ । କାହାର ପ୍ରଲୋଭନରେ ମୁଁ ମୋର ବ୍ୟକ୍ତିତ୍ୱ ହରାଇ ବସେ ନାହିଁ । ତୁମପରି ଏକ ବଳିଷ୍ଠ ବ୍ୟକ୍ତିତ୍ୱ ସମ୍ପର୍କରେ ଆସିଲେ କୌଣସି ନାରୀ ଭୁଲ୍ କରିବନି । ତଥାପି ତୁମକୁ ସନ୍ତୁଷ୍ଟ କରିବାକୁ ଯାଇ ମୋର ଭୁଲ୍ ନ ଥିଲେ ବି ମୁଁ କ୍ଷମା ମାଗୁଛି ସେ ଦିନର ସେହି ଅଭଦ୍ର ପରିସ୍ଥିତି ପାଇଁ । ତୁମେ ମୋ ପ୍ରତି ଆକୃଷ୍ଟ ହୋଇ ନ ଥିଲ । ମୁଁ କାହିଁକି କେଜାଣି ତୁମ ପ୍ରତି ଦୁର୍ବଳ ହୋଇ ପଡୁଥିଲି । ତୁମକୁ ପାଇବାର ସ୍ୱପ୍ନ ମୋର ଅନେକ ଦିନର ପୁରୁଣା ।

ସେ ସ୍ୱପ୍ନ ମୋର ସ୍ୱପ୍ନରେ ହିଁ ରହିଗଲା । ମରୁଭୂମିରେ ଜଳ ଖୋଜା ପାଇଁ ମରୀଚିକା ପଛରେ ଧାଇଁଲେ ଶେଷରେ ତୃଷାର୍ତ୍ତର ଅବସ୍ଥା ଯାହା ହୁଏ, ମୋର ଅବସ୍ଥା ଆଜି ଠିକ୍ ସେୟା । ଏକ ମୂଲ୍ୟବାନ ପଦାର୍ଥ ହାତରେ ପାଇ, ପୁଣି ତାକୁ ହରେଇ ଦେଲେ ମନର ଅବସ୍ଥା ଯାହା ହୁଏ ମୁଁ ଆଜ ସେଇ ସନ୍ଧିକ୍ଷଣରେ ଦଣ୍ଡାୟମାନ ।

ଆଉ ଅଳ୍ପ କେତୋଟି ମୂହୂର୍ତ୍ତ ପରେ ମୁଁ ତୁମକୁ ସଂପୂର୍ଣ୍ଣ ଭୁଲେଇ ବସିବି, ତା'ର କାରଣ କ'ଣ ଜାଣ ? ମୋ'ର ଦୁର୍ଭାଗ୍ୟ ଯେ ତୁମର ବନ୍ଧୁ ମନ୍ଦାରଙ୍କ ଜିବାଣୁ ଦ୍ୱାରା ଭୁମର ପ୍ରତଦ୍ୱନ୍ଦୀ । ଏ କ୍ଷେତ୍ରରେ ମୁଁ କାହାର ହେବି କୁହ ? ମୁଁ ଚାହେଁ ତାହାର କାହା ସହିତ ମନାନ୍ତର ଆଉ ଶତ୍ରୁତା ସୃଷ୍ଟି ନହେଉ । ସେଇଥି ପାଇଁ ମୁଁ ମୋର କଣ୍ଟକିତ ପଥ ବାଛି ନେଇଛି । ମୋର ଶ୍ରେଷ୍ଠ ଅନୁରୋଧ ରଖିବ । ତୁମେ ଦୁହେଁ ମୋତେ ଚିରଦିନ ପାଇଁ ମନରୁ ପୋଛି ଦେବ । ଇତି ।

'ଅମିତା'

ଚିଠିଟି ପଢ଼ି ସାରି ପଛକୁ ମୁହଁ ଫେରାଇଲା ଶେଖର । ଅମିତା କେତେ ବେଳୁ ଆସି ତା' ପଛରେ ଛିଡ଼ା ହୋଇଛି ତାକୁ ଜଣା ନାହିଁ । ଲୁହ ଦୁଇ ଟୋପା ଗଡ଼ି ଯାଉଥିଲା ତା'ର ରକ୍ତାଭ ଗଣ୍ଡ ଦେଇ । ତା'ର ମୁହଁ କ୍ରମେ ଶେତା ପଡ଼ି ଆସୁଥିଲା । ପାଦ ତଳୁ ମାଟି ଯେପରି ଖସି ଖସି ଯାଉଥିଲା । ଆଖି ଆଗରେ ଜୁଳୁଜୁଳିଆ ପୋକ ଉଡ଼ି ଯାଉଥିଲେ । ତା'ର ଗୋଟିଏ ଅଙ୍ଗ ଯେପରି ଅକାମୀ ହୋଇ ପଡ଼ୁଥିଲା । ଅନେକ ଅକୁହା କଥା ମନରେ ରହିଗଲା । ହଷ୍ଟେଲକୁ ଫେରି ଯିବାପାଇଁ ଆଗକୁ ପାଦ ବଢ଼ାଇଲା ଶେଖର ।

ଅମିତା ଆଖିରୁ ଲୁହ ପୋଛି କହିଲା, "ଯାଉଛ ଶେଖର ।" କଣ୍ଠ ତାର ବାଷ୍ପରୁଦ୍ଧ ହୋଇ ଯାଉଥିଲା । ପାଟି ଖୋଲି ମଧ୍ୟ ଯାଉଥିଲା । ବିନା ଶୀତରେ ବି ଓଠ ତା'ର ଥରି ଉଠୁଥିଲା—"ମୋତେ କ୍ଷମା ଦିଅ ଶେଖର ! ମୁଁ ତୁମକୁ ଅନେକ କଷ୍ଟ ଦେଇଛି । ତୁମେ ବିଚାର କର, ଏ କ୍ଷେତ୍ରରେ ମୋ ପରି ଜଣେ ଅବଳା କ'ଣ କରିପାରନ୍ତା ? ତୁମେ ଅତି ମହାନ । ମୋ'ର ବିଶ୍ୱାସ ତୁମେ ମୋତେ କ୍ଷମା ଦେବ ।" କାନ୍ଦିଉଠିଲା ଅମିତା ଏକ ଶ୍ରେଷ୍ଠ ପିଲାଟି ପରି ।

ଶେଖର କହିଲା, "ତୁମେ ଠିକ୍ କରିଛ ଅମି । ଏଥିରେ ତୁମର ବା ଭୁଲ୍ କେଉଁଠି ? ଧୈର୍ଯ୍ୟହରା ହୁଅନା । ସବୁ ଆପେ ଠିକ୍ ହୋଇଯିବ । ଏକା ନିଶ୍ୱାସକେ ଏତକ କହି ଚୁପ୍ ହେଲା ଶେଖର । ଏତେ ଦିନର ସଂପର୍କରେ ହଠାତ୍ ଯବନିକା ପଡ଼ିଯିବ, ଭାବି ପାରିଲାନି ଶେଖର । ଅତୀତର କେତୋଟି ଘଟଣା ବହୁଳ ମୁହୂର୍ତ୍ତ ତା'ର ମନ ପ୍ରାଣକୁ ଦୋହଲାଇ ଦେଲା । ଉଠି ଆଗକୁ ପାଦ ବଢ଼ାଇଲା ସେ ।

ପିଲାଙ୍କ ପରି କହିଁ କହିଁ ହୋଇ କାନ୍ଦି ଉଠିଲା ଅମିତା । ଆଉ ଘରୁ ଅରୁଣା ଦେବୀ ପଶିଆସିଲେ । ସେ ଦେଖିଲେ ଶେଖର ତଳକୁ ମୁହଁ କରି ଛିଡ଼ା ହୋଇଛି, ଅମିତା ଆଖିରୁ ଲୁହ ଗଡ଼ାଉଛି । ହଠାତ୍ ସେ କିଛି ବୁଝି ନ ପାରି ଦୁହିଁଙ୍କ

ମୁହଁକୁ ପ୍ରଶ୍ନବାଚୀ ଦୃଷ୍ଟିରେ ଚାହିଁଲେ । ତାଙ୍କ ଘରେ ଏଇଭଳି ଦୃଶ୍ୟ ସେ କେବେ ଆଗରୁ ଦେଖି ନଥିଲେ । ଆଜି ଏହା ତାଙ୍କ ପ୍ରାଣକୁ ଆନ୍ଦୋଳିତ କରି ଦେଉଥିଲା । ଭାବନାର ଅରଣ୍ୟ ଭିତରେ ସେ ବାଟବଣା ହୋଇ ଯାଉଥିଲେ ।

ଯେଉଁଦିନ ଅମିତା ତା' ପିକ୍‌ନିକ୍‌ର ଦୁର୍ଘଟଣା କଥା ବର୍ଣ୍ଣନା କଲା, ସେ ଦିନ ଶେଖରର ନାଁ ଶୁଣି ତା' ପ୍ରତି କେଜାଣି କେମିତି ଏକ ମୋହ ସୃଷ୍ଟି ହୋଇଥିଲା ଅରୁଣା ଦେବୀଙ୍କ ମନରେ । ସେ ଅନାମନ୍ତ୍ରିତ ଘଟଣାକୁ ଦେଖି ନଥିଲେ ବି ତାହା କିପରି ଭୟଙ୍କର ହୋଇଥିବ ଭାବି ଯାଉଥିଲେ ସେ । ଶେଖରକୁ ଦେଖିବାର ଉତ୍କଣ୍ଠା କ୍ରମେ ତାଙ୍କର ବଢ଼ୁଥିଲା । ଅମିତାର ଜନ୍ମ ଉତ୍ସବରେ ସେ ଯେତେବେଳେ ଶେଖର ପ୍ରଦତ୍ତ ବହି ଉପରୁ ତା' ନା'ଟି ଜାଣିଲେ, ଆପେ ଆପେ ସେ ତାକୁ ଚହ୍ନି ପକାଇଲେ । ସେଦିନ ତାଙ୍କର ପ୍ରାଣ ପୁଲକରେ ଭରିଯାଇଥିଲା । କେଜାଣି କାହିଁକି ସେଇଦିନୁ ଶେଖରକୁ ନିଜ ପରିବାରରେ ଜଣେ ବୋଲି ଭାବି ନେଇଥିଲେ ଅରୁଣା ଦେବୀ ।

କ୍ରମେ ଶେଖର ପ୍ରତି ତାଙ୍କର ଏକ ବଡ଼ ଆଶାର ଅଙ୍କୁରୋଦ୍‌ଗମ ହେଲା । ସେ ଆଶା ବୃକ୍ଷ ଏକ ମହା ଦ୍ରୁମରେ ପରିଣତ ହୋଇଛି ।

ଏବେ ଶେଖରର କଥାବାର୍ତ୍ତା, ଚାଲିଚଳନରେ ଅନେକ ପରିବର୍ତ୍ତନ ଲକ୍ଷ୍ୟ କରୁଛି ଅମିତା । ଦୁହେଁ ଏକାଠି ପ୍ରଫେସରଙ୍କ ପାଖକୁ ଯାଉଛନ୍ତି, କ୍ଲାସରେ ଆଗ ଭଳି ଯୁକ୍ତିତର୍କ କରୁଛନ୍ତି, ସବୁ ଠିକ୍ ଚାଲିଛି, ହେଲେ ପର ମୁହୂର୍ତ୍ତରେ ଶେଖର ନୀରବ । ଅମିତା ଏବେ ଦେଖୁଛି ଶେଖରର ମୁହଁରୁ ସରସତା ଯେପରି କେହି ହରଣ କରି ନେଇଛି । ଆଉ ସେ ସୁଧା ଝରା ହସ ନାହିଁ । ନାହିଁ ସେ ପ୍ରଶ୍ନବାଚୀ ଚାହାଣି । ଆଉ ସେ ହସ ହସ ମୁହଁରୁ ବାହାରି ଆସୁନି "ଅମି ! ତୁମ ମୁହଁ କାହିଁ ଶୁଖି ଯାଇଛି । କ'ଣ ଦେହ ଭଲ ନାହିଁ ?" ଦୁହେଁ ଏକାଠି ରିକ୍‌ସାରେ ଆସିଲେ ଜଣେ ଯଦି ଭଡ଼ା ଦେଇ ଦେଉଛି ଅନ୍ୟ ଜଣକ ନୀରବ । ଶେଖରର ସ୍ୱଭାବ ଏପରି ବଦଳି ଯିବାରେ ଅରୁଣା ଦେବୀ ଅନେକ ପରିମାଣରେ ଚିନ୍ତିତ ହୋଇ ପଡ଼ିଛନ୍ତି ।

ଆନୁଆଲ ବି. ଏସ୍. ସି. ପରୀକ୍ଷାର ଶେଷ ଦିନ । ହଷ୍ଟେଲର ୧୭ ନମ୍ବର ରୁମ୍‌ରେ ଏକାକୀ ଶେଖର ପୁରୁଣା ଡାଏରୀରୁ ପୃଷ୍ଠା ପରେ ପୃଷ୍ଠା ଖୋଲାଇ

ଯାଉଥିଲା । କେତେବେଳେ କେମିତି ମଝିରୁ ପୃଷ୍ଠାଏ ପୃଷ୍ଠାଏ ପଢ଼ି ଦେଇ ଭାରାକ୍ରାନ୍ତ ମନ ନେଇ ଚୁପ୍ ହୋଇ ବସି ରହୁଥିଲା । ଅମିତା ଅନେକ ବେଳୁ କବାଟ ପାଖରେ ଛିଡ଼ା ହୋଇଥିଲା ଶେଖରର ଅଲକ୍ଷ୍ୟରେ । ଠିକ୍ ହୃଦୟଟାକୁ ଉପରକୁ ଗୁନ୍ଥି-ଦେଲାବେଳେ ତା'ର ନଜର ଅମିତା ଉପରେ ପଡ଼ିଲା । ତା' ପାଟିରୁ ବାହାରି ଆସିଲା, "ଅରେ ଅମି ! ଏଣେ କୁଆଡ଼େ ଆସିଲ ? କେତେବେଳୁ ଆସିଲଣି ?"

ତଳକୁ ମୁହଁ କରି ଅମିତା କହିଲା, ଏଇ"ସଙ୍ଗେ ସଙ୍ଗେ ଆସିଲି ।"

"ପରୀକ୍ଷା କିପରି ହେଲା ?" ପଚାରିଲା ଶେଖର ।

"ସେମିତି ହୋଇଛି ।"—କହିଲା ଅମିତା ।

"ଆଉ କ'ଣ କହିବ ?" ପଚାରିଲା ଶେଖର ।

"ତୁମେ ଆଉ ଏବେ ଆମ ଘରକୁ ଯାଉନ, ବୋଉର ମନ ଭାରି ଦୁଃଖ ।"

"—ଅମି ! ପରୀକ୍ଷା ସରିଲା, ତା' ସାଥିରେ ଆମର ପାଠ ପଢ଼ା ବି ସରିଲା । ପରୀକ୍ଷା ପର୍ଯ୍ୟନ୍ତ ମାଉସୀ ମୋତେ ଯେଉଁ ଦାୟିତ୍ୱ ଦେଇଥିଲେ ତାହା ମୁଁ ଠିକ୍ ଭାବରେ ପାଳନ କରି ପାରିଛି ।" ଏବେ ମୁଁ ମୁକ୍ତ । ଆଉ କ'ଣ ତାଙ୍କର ଲୋଡ଼ା ?

"—ସତ୍ୟ ସବୁବେଳେ ନିରାଭରଣ, ଆଡ଼ମ୍ବର ଶୂନ୍ୟ, ରଙ୍ଗହୀନ, ସ୍ୱାଦହୀନ, ଗନ୍ଧହୀନ କିନ୍ତୁ ଉପଲବ୍ଧିରେ ଅସୀମ, ଅନନ୍ତ, ନିରାକାର । ଏହାକୁ ତୁମେ କ'ଣ ଅସ୍ୱୀକାର କରିପାରିବ ?" କହିଲା ଅମିତା ।

—"ଅମି ! ଧୀର ଆଉ ନମ୍ରତା ଭିତରେ ବି କଠୋରତା ଆସିପାରେ । ବନ୍ଧୁ ମୂଲ୍ୟର ମର୍ଯ୍ୟାଦା ହଳାହଳ ଧାରଣ କରିଥାଏ ।" କହିଲା ଶେଖର ।

—"ତୁମ ମନକୁ ବୁଝେଇବାକୁ ତୁମେ କେବଳ ସମର୍ଥ । ମୁଁ କ'ଣ ସେ କଥା ମୁଁ କେବଳ ଜାଣେ ।" ଏତିକି କହି ଆଖିରୁ ଲୁହ ପୋଛିଲା ଅମିତା ।

—"ଛାଡ଼ ସେ କଥା, ଆଉ କ'ଣ ନୂଆ କଥା ଅଛି କୁହ ।" ଶେଖର କହିଲା ।

—"ବୋଉ କହିଛି; ଚାଲ ଆମ ଘରକୁ ଯିବା ।" ଏତିକି କହି ଅମିତା ମୁହଁ ବୁଲାଇଲା ।

ରିକ୍ସା ଗଡ଼ି ଚାଲିଲା ଆଗକୁ ଆଗକୁ । ସେଥିରେ ବସିଥିବା ତରୁଣ ତରୁଣୀ ଦୁଇଜଣ ନୀରବ, ଯେପରି କେହି କାହାରିକୁ ଜାଣି ନାହାନ୍ତି । ରିକ୍ସା ରାମବାବୁଙ୍କ ଗେଟ୍ ପାଖରେ ଅଟକିଲା । ରିକ୍ସାରୁ ଓହ୍ଲାଇ ପଡ଼ିଲେ ଶେଖର, ଅମିତା । ରିକ୍ସା ବାଲାକୁ ଶେଖର ପଇସା ଦେଉ ଦେଉ ଅମିତା କହିଲା, "ଆରେ ! ତୁମେ ଆମର କୁଣିଆଁ, ମୁଁ ତୁମକୁ ଡାକି ଆଣିଛି । ତୁମେ ପଇସା ରଖ, ମୁଁ ଦେଇ ଦେଉଛି ।" ରିକ୍ସାବାଲାକୁ ବିଦା କରିଦେଇ ଶେଖର କହିଲା, "ପଇସା ପର୍ସରେ ରଖ । କାଲି ମିଠେଇ କିଣି ଖାଇବ ।"

ବାହାରେ ଦୁହିଁଙ୍କର କଥୋପ—କଥନରେ ଅରୁଣା ଦେବୀ କବାଟ ଖୋଲି-ଦେଇ କହିଲେ, "ମୋ' ବାପା କେତେବେଳୁ ଆସିଲେଣି ! ଅମି, ମୋତେ ଡାକିବା ଛାଡ଼ି ବାହାରେ ଏମିତ ତାଙ୍କ ସାଥିରେ ଝଗଡ଼ା ଲଗାଇଛୁ ?"

ଅମିତା ମନେ ମନେ ଖୁସି ହେଉଥିଲା । ଅନେକ ଦିନ ହେଲା ଶେଖର ତା' ସହିତ କଥାବାର୍ତ୍ତା ବନ୍ଦ କରି ଦେଇଥିଲା । ଆଜି କେମିତି ତାଙ୍କଠାରେ କିଛିଟା ପରିବର୍ତ୍ତନ ଲକ୍ଷ୍ୟ କରୁଛି ସେ ।

ଦୁହିଁଙ୍କୁ ଖାଇବାକୁ ଦେଉ ଦେଉ ଅରୁଣା ଦେବୀ କହିଲେ, "ବୁଝିଲ ଶେଖର ! ତୁମେ ଏଇ କେଇଦିନ ଆମ ଘରକୁ ଆସିଲନି ବୋଲି ମଉସା ଖୁବ୍ ବ୍ୟସ୍ତ ହୋଇ ପଡ଼ିଥିଲେ । ଆଜି ଯେତେବେଳେ ମୁଁ ଅମିକୁ କହିଲି ଫେରିଲାବେଳେ ତୁମକୁ ସାଙ୍ଗରେ ଡାକି ଆଣିବା ପାଇଁ, ସେ କହିଲା, 'ଶେଖର ମୋ' ଉପରେ ରାଗିଛନ୍ତି, ସେ ମୋଟେ ଆସିବେନି ।' କିନ୍ତୁ ମୁଁ ଜାଣିଥିଲି ତୁମେ ନିଶ୍ଚେ ଆସିବ । ଏ ଗରିବ ମାଉସୀକୁ ତୁମେ କ'ଣ ଏତେ ଶୀଘ୍ର ଭୁଲିଯିବ ?"

ଶେଖର, ଅମିତା ଦୁହେଁ ଏକାବେଳକେ ହସି ଉଠିଲେ ।

ଅରୁଣା ଦେବୀ କହିଲେ, "ଶେଖର ! ଗ୍ରାଣ୍ଡ ହଲରେ ଲଇଲା ମଜନୁ ଖେଳୁଛି । ଅମି ଦୁଇ ସପ୍ତାହ ହେଲାଣି ମୋ' ସାଥିରେ ଲଗାଇଛି ପରୀକ୍ଷା ସରିଲେ ସିନେମା ଦେଖିବାକୁ ଯିବା ବୋଲି । ସେଇଥି ପା ଆଜି ଡକାଇଥିଲି । ତୁମରତ ପରୀକ୍ଷା ସରିଲା । କାଲି ରବିବାର । ତିଉସନ ତୁମର ବି ନଥିବ, ତିନିଏ ଗ୍ରାଣ୍ଡ ହଲ ଆଡ଼େ ବୁଲି ଆସିଲେ କିମିତ ହୁଅନ୍ତା ? ମୁଁ ରଘୁକୁ ପଠାଇ କାଲି ମାଟିନି ପାଇଁ ଟିକେଟ ଆଣିଥିବ । ତୁମେ ନିଶ୍ଚୟ ଆସିବ ।"

ଗ୍ରାଣ୍ଡ ହଲର ବାଲ୍‌କୋନି ପ୍ରାୟ ଲୋକାରଣ୍ୟ । ଅଧଘଣ୍ଟାଏ ପରେ ଅରୁଣା ଦେବୀ କହିଲେ, ଅମି ! ମୋ'ର ମୁଣ୍ଡ ବିନ୍ଧା ଆରମ୍ଭ ହେଲାଣି । ଏ ଜାଆଁ-ଲଗା ମୁଣ୍ଡ ବିନ୍ଧା ରୋଗଟା ମୋର ଗଲାନି । ସେଇଥି ପାଇଁ ମୁଁ ସିନେମା ଆସିବାକୁ ଭଲ ପାଏନି । ହଉ, ତୁମେ ଦୁହେଁ ପରେ ଯିବ, ମୁଁ ଏବେ ଚାଲିଯାଉଛି । ଶେଖର ଅରୁଣା ଦେବୀଙ୍କ ମୁହଁକୁ ଚାହିଁ ରହିଥିଲା । "ବାପା, ତୁମେ ଥାଅ, ମୁଁ ଆସୁଛି", କହି ଅରୁଣା ଦେବୀ ହଲ ଛାଡ଼ିଲେ ।

ଲଇଲି ମଜ୍‌ନୁଙ୍କର କାହାଣୀ ପରଦା ଉପରୁ ଅପସରି ଗଲା । ଦୁଃଖାବହ ଏଇ ପ୍ରେମ କାହାଣୀ ସବୁ ଦର୍ଶକଙ୍କ ପ୍ରାଣକୁ ଅଳ୍ପ ବହୁତେ ଆନ୍ଦୋଳିତ କରିଥିବ ହୁଏତ । ଭାରାକ୍ରାନ୍ତ ମନକୁ ନେଇ ଅମିତା ପଛେ ପଛେ ଚାଲୁଥିଲା ଶେଖର ପାଦ ଗଣି ଗଣି । ଦୁହେଁ ରିକ୍‌ସାରେ ବସିଲେ । ରିକ୍‌ସା ଚାଳକ ତା'ର ବେସୁରା ରାଗିଣୀ ତାଳେ ତାଳେ ବେପରୁଆ ଭାବରେ ରିକ୍‌ସା ବାହି ଚାଲିଥାଏ । ତା'ର ଯେପରି କାହାରି ଉପରେ ଭରସା ନାହିଁ, କାହାରିକୁ ଖାତିର ବି ନାହିଁ ।

ପଛରୁ କାରଟିଏ ରିକ୍‌ସାକୁ ଧକ୍‌କା ଲଗାଇ ଦେଇ ଚାଲିଗଲା । ରାସ୍ତା ଉପରକୁ ଛିଟିକି ପଡ଼ିଲା ଶେଖର । ତା'ର ଚେତା ହଜିଗଲା ।

ଏସ୍ ସି· ବି· ମେଡ଼ିକାଲର ଇମର୍‌ଜେନ୍‌ସି ଆଉଟ୍‌ଡୋରରେ ଶେଖର । ଅଚେତ ଶରୀର ତା'ର ଲେଟି ପଡ଼ିଛି ଖଟିଆ ଉପରେ । ପ୍ରଫେସର ଆସି ଭଲ ଭାବେ କରି ପରୀକ୍ଷା କରିଗଲେ । ଉତ୍କଣ୍ଠାର ସହିତ ଅମିତା ପଚାରିଲା, "ସାର୍ କ'ଣ ହେଲା ତାଙ୍କର ! ହୋସ୍ ଆସି ପୁଣି ଚାଲିଯାଉଛି କାହିଁକି ?" ତା'ଠାରୁ ସମସ୍ତ ଘଟଣା ଶୁଣି ସାରିଲା ପରେ ଡାକ୍ତର କହିଲେ, "ସେ ଅନେକ ଭୟ ପାଇଛନ୍ତି । ସେଇଥି-ପାଇଁ ଏପରି ହେଉଛି । ଆପଣ ବ୍ୟସ୍ତ ହୁଅନ୍ତୁନି, ସବୁ ଠିକ୍ ହୋଇଯିବ । ଏବେ ଆପଣ ଟିକିଏ ବାହାରେ ଅପେକ୍ଷା କରନ୍ତୁ ।"

ବାହାରେ ବେଞ୍ଚଟିଏ । ସେଇଠି ଜଣେ ବୁଢ଼ା ବସିଥିଲେ ଏକା । ବୟସ ତାଙ୍କର ପଇଁଚାଳିଶିରୁ କମ୍ ହେବନି । ତାଙ୍କର ପରିପାଟୀରୁ ସେ ବେଶ୍ ରୁଚି-ସମ୍ପନ୍ନ ଜଣା ପଡ଼ୁଥିଲେ । ତାଙ୍କର ଏକ ମାତ୍ର ପୁଅ ପାଗଳ ହୋଇଯାଇଛି । ତାକୁ

ମେଡ଼ିକାଲରେ ଶୁଣିଛି ତାଙ୍କର ସ୍ୱାମୀ ଫେରି ଯାଇଛନ୍ତି । କହି ଯାଇଛନ୍ତି ରାତି ୧୦ଟା ବେଳକୁ ଫେରିବେ । ଧୂଆଁକୁ ମେଡ଼ିକାଲରେ ଜଗି ବସିଛନ୍ତି ବୃଦ୍ଧା । ଅମିତା ଆଗରେ ଏହି କଥା କହି ଲୁଗା କାନିରେ ଆଖି ପୋଛୁଥିଲେ ମହିଳା ଜଣକ ।

ତୁମର ନାଁ । କ'ଣ ମା' ? ସୁନ୍ଦର ରୂପଟି ତୁମର । ବିଧାତା ତୁମକୁ କେତେ ସୁନ୍ଦର କରି ଗଢ଼ିଛି । ତୁମର ଘର କ'ଣ ଏଇ କଟକରେ ? ଆଉ କିଏ ସବୁ ଅଛନ୍ତି ? ଏ ବାବୁ ତୁମର କ'ଣ ହୁଅନ୍ତି ? ଏକାବେଳକେ ଏତେ ଗୁଡ଼ିଏ ପ୍ରଶ୍ନ ପଚାରି ଦେଇ ନୀରବ ହେଲେ ସେ ଭଦ୍ର ମହିଳା ।

ଶେଷ ପ୍ରଶ୍ନଟି ପଚାରିଲା ବେଳକୁ ତଳକୁ ମୁହଁ କଲା ଅମିତା । ଏହା ବ୍ୟତୀତ ଅନ୍ୟ ପ୍ରଶ୍ନଗୁଡ଼ିକର ଉତ୍ତର ଅନାୟାସରେ ଦେଇ ପାରିବ ସେ । ତେବେ ଏ ଶେଷ ପ୍ରଶ୍ନଟିର ଉତ୍ତର ସେ କ'ଣ ଦେବ ? ଏହାର ଉତ୍ତର କ'ଣ ହେବ ସେ ତ ଜାଣେନା ! କ'ଣ କହିବ ସେ ? କେତେ କ'ଣ ଭାବି ଯାଉଥିଲା ସେ ।

ଭଦ୍ର ମହିଳା ଜଣଙ୍କ ଅମିତା ମୁଣ୍ଡରେ ହାତ ବୁଲାଇ କହିଲେ, "ମା ସ୍ୱାମୀ କହିବାକୁ କ'ଣ ଲାଜ ଲାଗୁଛି ? ମୁଁ ଜାଣେ ପରା ଆଜି କାଲି ଝିଅମାନେ ଏଇଆ । ସ୍ୱାମୀଙ୍କୁ ସ୍ୱାମୀ ବୋଲି କହିବାକୁ ଲାଜ, ମୁଣ୍ଡରେ ସିନ୍ଦୁର ଲଗାଇବାକୁ ଲାଜ । ଏ ଗୋଟେ କେମିତି କଥା । ଆମେ ଯେତେବେଳେ ବୋହୂ ହୋଇ ଆସିଥିଲୁ ସେତେବେଳେ ମୁଣ୍ଡରେ ହାତେ ଓଢ଼ଣା, ମଥାରେ ଡାଳ୍ ଡାଉ ସିନ୍ଦୁର, ସ୍ୱାମୀ ପାଦ ପାଖରେ ମଥା, ଏମିତି କେତେ କଥା । ଏବେ ତ ସମସ୍ତ ବଦଳି ଗଲାଣି । ତା' ସାଥିରେ ବି ସବୁ ରୀତିନୀତି ବଦଳି ଗଲାଣି । ଭଦ୍ରମହିଳା କହି ଚାଲିଥିଲେ । ଏଇ ସମୟରେ ତାଙ୍କ ସ୍ୱାମୀ ଖାଦ୍ୟ ପଦାର୍ଥ ଧରି ଆସି ପହଞ୍ଚିଲେ । ମହିଳା ଜଣଙ୍କ ଉଠୁ ଉଠୁ କହିଲେ, "ଆଲୋ ମା' ମୁଁ ତୋ ମା' ସମାନ । କ'ଣ କହିଦେଲି ମୋ' କଥା ଧରିବୁନି ।"

ବୃଦ୍ଧା ମହିଳାର କଥା ଅମିତା କାନରେ ବାରମ୍ବାର ପ୍ରତିଧ୍ୱନିତ ହେଉଥିଲା । "ମା' ସ୍ୱାମୀ କହିବାକୁ କ'ଣ ଲାଜ ଲାଗୁଛି"—ଛଳଛଳେଇ ଆସିଲା ଅମିତାର ଆଖି । କେଉଁ ଅଧିକାରରେ ସେ 'ସ୍ୱାମୀ' ଭଳି ପବିତ୍ର ଶବ୍ଦଟିକୁ ହୃଦୟରେ ପୋଷଣ କରିବ ?

ରାତି ୨ଟା ବେଳକୁ ଶେଖରର ଚେତା ଫେରିଲା । ସେ ଆଶ୍ଚର୍ଯ୍ୟ ହୋଇ ଚାହୁଁଥିଲା ଏଣେତେଣେ, ଅସ୍ପଷ୍ଟ ସ୍ୱରରେ ପାଣି ପାଇଁ ହାତ ଠାରିଲା । ନେସର୍ ଜଣେ କହିଲେ, "ମିସେସ୍ ଚୌଧୁରୀ ! ତାଙ୍କୁ କିଛିଏ କ୍ଷୀର ପିଇବାକୁ ଦିଅନ୍ତୁ, ସେ ଯଦି କିଛି ଖାଇବାକୁ ଚାହୁଁଛନ୍ତି ତେବେ ଦେଇ ପାରନ୍ତି ।"

"ମିସେସ୍ ଚୌଧୁରୀ" ଏ ଦୁଇଟି ଶବ୍ଦ ଶୁଣି ଅବାକ୍ ହୋଇ ଯାଉଥିଲ ଶେଖର । ଅମିତା'ର ହସିଲ ମୁହଁକୁ ସେ ଗୃହିଁ ରହୁଥିଲ ଅପଲକ ନେତ୍ରରେ । କ'ଣ କହିବ, କହିବ ବୋଲି କହି ପାରୁ ନ ଥିଲ ସେ । ଅମିତା ତାକୁ କେମିତ ଆଜି ନୂଆ ନୂଆ ଦିଶୁଥିଲ ।

ଆଜ ଆନୁଆଲ ବି. ଏସ୍. ସି. ପରୀକ୍ଷା ଫଳ ପ୍ରକାଶ ପାଇଛି । କଲେଜ କ୍ୟାମ୍ପସ୍ ମୁଖରିତ ହୋଇ ଉଠିଛି । ନୋଟିସ୍ ବୋର୍ଡ ପାଖରେ ଅନେକ ଭିଡ଼ । ବେଷ୍ଟ ଗ୍ରାଜୁଏଟ୍ ଶେଖର ଚୌଧୁରୀର ନାମ ଶୀର୍ଷ ସ୍ଥାନରେ । ପ୍ରଥମ ଶ୍ରେଣୀ ତାଲିକା ଭିତରେ ଅମିତାର ନାମ ।

ସଞ୍ଜ ଦୁଇ ଘଡ଼ି ହେଲଣି । ବୋଉ ରୋଷେଇ ଶାଳରେ । ଖଡ଼କା, କରଚୁଲର ଖଡ଼ ଖଡ଼ ଶବ୍ଦ ଅମିତାର ମନକୁ ବୋଉ ପାଖକୁ ଟାଣି ନେଉଛି । ବୋଉ ଆଜି ଅନେକ ପ୍ରକାର ଆଇଟମ୍ ତିଆରି କରୁଛି । ରଘୁ ବୋଉକୁ ସାହାଯ୍ୟ କରୁଛି । ସେ ଦଉଡ଼ି ଯାଇ ବୋଉକୁ ଉଠାଇ ଦେଇ ନିଜେ ଗୋଟି ଗୋଟି କରି ସବୁ ତିଆରି କରନ୍ତା, ଶେଖର ଆଗରେ ଆଗ୍ରହରେ ଠାଏ ଠାଏ ବାଢ଼ି ଥୋଇ ଦିଅନ୍ତା ।

ଶେଖର କଥା ଦେଇଛନ୍ତି ଆସିବେ ବୋଲି । ଏ ବର୍ଷର ବେଷ୍ଟ ଗ୍ରାଜୁଏଟ୍ ଶେଖର ଚୌଧୁରୀ । କେତେ ବଡ଼ ଗୌରବର ସେ ଆଜି ଅଧିକାରୀ । ତାଙ୍କୁ ସମ୍ବର୍ଦ୍ଧନା କ'ଣ ଏମିତ ସେମିତ ଦିଆଯାଇପାରେ ? ଅମିତା ଏ ଘରୁ ସେ ଘର ହେଉଥିଲ । ଶେଖର ନିର୍ଦ୍ଧାରିତ ସମୟରେ ପହଞ୍ଚି ଗଲ । ତାକୁ ତା' ପଢ଼ାଘରେ ବସାଇ ଦେଇ ଅମିତା ଭିତରକୁ ଗୃଲିଗଲ ।

"ଭୋଗ ନିଅ ।" କିଛି ସମୟ ପରେ ଅମିତା ଗୃଙ୍ଗୁଡ଼ିଟିରେ ଭୋଗ ଧରି ଆସି ଶେଖରକୁ ଯାଚିଲ ।

ଶେଖର ହସି ହସି କହିଲ, "ଅମି ! ତୁମର ପରୀକ୍ଷା ଫଳ ଭଲ ହୋଇଛି ବୋଲି ଠାକୁରଙ୍କ ପାଖରେ ଆଜି ଏ ଭୋଗର ଆୟୋଜନ ।"

ନାହିଁ, ନାହିଁ ମୋ' ପାଇଁ ନୁହେଁ, ତୁମର ପାଇଁ । ମୋ' ପାଇଁ କେତେ-ବେଳେ ବି ମୋର ଚିନ୍ତା ନ ଥାଏ । ମା' ଚଣ୍ଡୀଙ୍କୁ ତୁମର ପାଇଁ ଜଣାଇଥିଲି ।

ତାଙ୍କର କୃପାରୁ ତୁମେ ଆଜ ଉତ୍କଳ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ରଙ୍କ ଭିତରେ ଶ୍ରେଷ୍ଠ ସ୍ଥାନ ପାଇବାର ଗୌରବ ଅର୍ଜନ କରିଛ । ପରୀକ୍ଷା ଫଳ ଜାଣିଲା ପରେ ତୁମକୁ ଆମ ଘରକୁ ଆଣିବା ପାଇଁ କହିଦେଇ ମୁଁ ପିତାଙ୍କୁ ସଙ୍ଗରେ ଧରି ଚଣ୍ଡୀ ମନ୍ଦିରକୁ ଯାଇଥିଲି । ଭୋଗ ଧରି ଫେରିଲା ବେଳେ ପିତା ଟିକା ଚପି ଅଧେ ଖାଇ-ଦେଲା । ଦୁହେଁ ହସି ଉଠିଲେ ।

ଦୁହେଁ କିଛି ସମୟ ନୀରବରେ କଟେଇ ସାରିଲା ପରେ ଅମିତା କହିଲା, "ଏବେ କ'ଣ କରିବ ? ଶେଖର କହିଲା ଆଗ ତୁମେ କୁହ କ'ଣ କରିବ ?

"ମୁଁ ତ ଝିଅ ପିଲା । ମୋ'ର କ'ଣ ସେମିତି କିଛି ଲକ୍ଷ୍ୟ ଅଛି ? ଏକ ସଉକ୍‌ରେ ପଢୁଥିଲି । ବାପା ଯଦି କହିବେ ପଢ଼ିବି । ହସି ହସି କହିଲା ଅମିତା ।"

"ଅମି ! ତୁମ ପରି ସର୍ବଗୁଣ ସମ୍ପନ୍ନା ଭଲ ଛାତ୍ରୀ କେତେ ଜଣ ଥା'ନ୍ତି ! ମୋ'ର କ୍ରେଟ କଥା ମାନ ତୁମେ ଏମ୍ ଏସ୍. ସି ପଢ଼ ।" କହିଲା ଶେଖର ।

"ତୁମେ ?" ପ୍ରଶ୍ନବାଚୀ ଦୃଷ୍ଟିରେ ଚାହିଁଲା ଅମିତା ।

"ଭାବିଛି ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇବି । ତୁମେ କ'ଣ ଭାବୁଛ ?" ଶେଖର କହିଲା ।

ଦୀର୍ଘଶ୍ୱାସର ସହିତ ଅମିତା ପାଟିରୁ ବାହାରି ଆସିଲା, "ତୁମେ କଟକ ଛାଡ଼ି ଚାଲିଯିବ ?"

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର କ୍ୟାମ୍ପସ । ଏ.ଠ ନମ୍ବର ଲେଡ଼ିଜ୍ ହଷ୍ଟେଲ । ଅମିତା କ୍ଲାସ ସାରି ଫେରିଲା ହଷ୍ଟେଲକୁ । ଗେଟ୍ ପାଖରେ ପିତାକୁ ଦେଖି ତା' ଓଠକୁ ଟିକିଏ ହଲାଇ ଦେଇ ଖୁସିରେ ହସଟିଏ ହସି ଦେଇ କହିଲା, "କେତେବେଳୁ ଆସିଲୁଣି ? ଚାଲ୍ ଟିକିଏ ଫ୍ରେସ ହୋଇ କ୍ୟାଣ୍ଟିନ୍ ଆଡ଼େ ଯିବା ।" ରୁମ୍ ଖୋଲିଦେଇ ବେଡ୍ ଉପରେ ଦୁହେଁ ଗଡ଼ିଗଲେ । ପିତା କହିଲା, "ଗ୍ରେଜୁଏସନ୍‌ରେ ଟପର ହେବା ପାଇଁ ସିନା ତୋ'ର କେହି ପ୍ରତିଦ୍ୱନ୍ଦୀ ନ ଥିଲେ. ଏବେ ୟୁନିଭର୍ସିଟି ଟପର ହେବା ପାଇଁ ଦାଣ୍ଟ ପରିସ୍ଥିତି ନା' କିଛି ଅସୁବିଧା ଅଛି ?"

—"ତୋ'ର ଏଇ ଫାଜିଲାମି ଏ ଯାଏ ଗଲାନି ।"

—"ମୋ ଫାଜଲାମି ତୋ'ରି ପାଇଁ । ତୁ ତ ମୋତେ ଧରି ଏଠିକି ଚାଲି ଆସିଲୁ । ତୋ' ବାବୁ ତ ଗଲେ ଦିଲ୍ଲୀ, ମୁଁ ଆଉ ଫାଜଲାମି କରିବ କାହା ସାଥିରେ !"

—"ସତରେ ସ୍ମିତା କଟକ ଛାଡ଼ି ମୁଁ ବଡ଼ ଭୁଲ କଲି । ତୋ' ବିନା ଏଠି ମୋ' ଦିନଗୁଡ଼ିକ ଯେ କିପରି ବିତିବ ତାହା ମୋ ପାଇଁ ଏକ ବଡ଼ ସମସ୍ୟା ।"

—"ଅସଲ ଲୋକକୁ ତ ପାଖରେ ବାନ୍ଧି ରଖି ପାରିଲୁନି । ମୋ' କଥା କ'ଣ କହୁଛୁ ?"

—"ସ୍ମିତା ! ଶେଖର ଚିଠି ଦେଇଛନ୍ତି । ତାଙ୍କ ଚିଠି ପାଇଲା ପର ଠାରୁ ମୋ' ମନ କାହିଁକି ଦିନକୁ ଦିନ ଅସ୍ଥିର ହୋଇ ଉଠୁଛି । ଯେତେ ଯାହା ହେଲେ ବି କଟକରେ ତୁ ହିଁ ମୋତେ ଶାନ୍ତ୍ୱନା ଦେଉଥିଲୁ, ସବୁ କ୍ଷେତ୍ରରେ ମୋ'ର ସହାୟ ହେଉଥିଲୁ ତୁ । ହେଲେ ଏଠି ? ବାଣୀବିହାର ମୋ' ପାଇଁ ସମ୍ପୂର୍ଣ୍ଣ ନୂଆ । ଆଉ ଏଠାକାର ପରିସ୍ଥିତି ସମ୍ପୂର୍ଣ୍ଣ ଭିନ୍ନ । ତୋତେ କେତେ ଅନୁରୋଧ କଲି ଏଠିକି ଆସିବା ପାଇଁ । ଶେଷରେ ମୋତେ ନିରାଶ କଲୁ । ତୁ ଏଠିକି ଆସିଥିଲେ ମୋ' ସୁଖ ଦୁଃଖରେ ତୋତେ ଟିକିଏ ଭାଗୀ କରାଇ ଥା'ନ୍ତି ।"

—"ହେଉ ଯାହାତ ହେବାର ହେଲାଣି, ଏବେ ଚିନ୍ତା କରି ଲାଭ କ'ଣ ? ହୁଁ କହୁଲୁନି ତ ଶେଖର କ'ଣ ଲେଖିଛି ?"

—"ତାଙ୍କ ମନ ଭିତରେ ପୁଞ୍ଜିଭୂତ ଅଭିମାନକୁ ମୋ' ପାଇଁ ଉପହାର ପଠାଇଛନ୍ତି ।"

—"ସତରେ ସେ ବଡ଼ ଅଭିମାନୀ, ଆଉ ତୋ'ପାଖରେ ତା'ର ଅଭିମାନ ବେଶୀ ।"

—"ସେ ଏବେ ଅନେକ ଯୋଜନ ଦୂରରେ, ଫେରିବେ ଦୁଇ ବର୍ଷ ପରେ । କିଏ ଜାଣେ ଏ ଦୁଇ ବର୍ଷ ଭିତରେ କିଛି ଯଦି ଓଲଟ ପାଲଟ ହୋଇ ନଯିବ ?

—ମନ ଦୃଢ଼ କଲେ ଗଡ଼ିଆ ଗଣ୍ଡା । ଏ ସବୁ ବଡ଼ ପୁରୁଷମାନେ କହି ଯାଇଛନ୍ତି । ଏ ଉକ୍ତି କେତେଦୂର ସତ୍ୟ, ଆଉ କେତେଦୂର ଗ୍ରହଣଯୋଗ୍ୟ ସେ କଥା ମୁଁ ଜାଣେନି । ତଥାପି ଏ ଉକ୍ତିଟିକୁ ଟିକିଏ ପରୀକ୍ଷା କରି ଦେଖିଲେ କ୍ଷତି

କ'ଣ ହେବ ? ତୁ କାୟମନୋବାକ୍ୟରେ ଯଦି ଶେଖରକୁ ଭଲ ପାଉଥିବୁ ତେବେ ଠାକୁରେ ତୋତେ ନିଶ୍ଚେ ସହାୟ ହେବେ ।

—"ତୁ ସତ କହୁଛୁ ସ୍ମିତା ?"

—"ହଁ ଶୁଣ, ଏକ ଜରୁରୀ ଖବର ନେଇ ଆସିଛି । ତୁ ଏଠିକି ଆସିବା ଯୋଗୁ ବିକାଶ ଗ୍ରସ୍ତ ଏଠି ଲ' ଆଡମିସନ ନେଇଛି । ତେଣୁ ତୁ ଯେଉଁଥିପାଇଁ କଟକ ଛାଡ଼ିଲୁ, ସେହି ଗ୍ରହ ଏଠି ବି ଗ୍ରାସ କରିବାକୁ ଜିହ୍ୱା ମେଲାଇ ଧାଇଁ ଆସିଛି ।"

"ସତେ ନା କ'ଣ ? ତେବେ ମୁଁ କ'ଣ କରିବି ?"

—"ସେଇଥି ପାଇଁତ ଧାଇଁ ଆସିଲି ତୋତେ ସତର୍କ କରେଇ ଦେବା ପାଇଁ । ମୁଁ ମଝିରେ ମଝିରେ ଆସୁଥିବି । ତୁ ମଧ୍ୟ କେତେବେଳେ କେମିତି ସମୟ ପାଇଲେ କଟକ ଚାଲିଯିବୁ ।"

"ମୋତେ ବଡ଼ ଭୟ ଲାଗିଲାଣି ସ୍ମିତା । ବିକାଶ ଯେମିତିକା ପିଲା ନା କେତେବେଳେ ଯେ କ'ଣ କରି ବସିବ ? ମୁଁ ଏଠି କାହାର ହେବି କହି ତ ?"

"ଏବେ ଠାରୁ ଏତେ ବ୍ୟସ୍ତ ହେଲେ ହେବ ? ତା'ପରେ ଆମେ ଯଦି ସତର୍କ ରହିବା ସେ ବା ଆମର କ'ଣ କରିବ ?"

ଦୀର୍ଘ ଦୁଇ ବର୍ଷ କାଳ ମୁଁ ଯେ ଏଠି କି ସତର୍କତା ଅବଲମ୍ବନ କରିବି ଭାବି ପାରୁନି । ପାଠ ପଢ଼ା ପଛେ ନ ହେଲା ନାହିଁ ବାପା ବୋଉଙ୍କ ପାଖକୁ ଚାଲିଗଲେ ମୁଁ ଏ ଯନ୍ତ୍ରଣାରୁ ମୁକ୍ତ ।"

—"ନାଇଁ ନାଇଁ ଏତିକି ବେଳୁ ଏତେ ଅଧୈର୍ଯ୍ୟ ହୋଇ ପଡ଼ିଲେ କ'ଣ ହେବ ?"

"ସ୍ମିତା, ତୁ ତ ଜାଣୁ, ସେଦିନର ସେଇ ସାମାନ୍ୟ ବ୍ୟତିକ୍ରମ ଯୋଗୁ ଏ ଯାଏ ମୁଁ ହନ୍ତସନ୍ତ ହୋଇ ମରୁଛି । ଏବେ ବିକାଶ ଗ୍ରସ୍ତ ଏଠିକି ଆସିଲାଣି, ମିଥ୍ୟାକୁ ସତ୍ୟ ବୋଲି କହି କପୋଳକଳ୍ପିତ ସମ୍ବାଦ ଯଦି ସେ ଶେଖର ନିକଟରେ ପହଞ୍ଚାଇ ଦିଏ ତେବେ ମୋ ଅବସ୍ଥା କ'ଣ ହେବ କହିତ !"

"ଏ ସବୁ ପାଇଁ ଏତେ ଚିନ୍ତା କରିବା ଦରକାର ନାହିଁ । ଶେଖର ସମ୍ପର୍କରେ ମୁଁ ଯାହା ଜାଣେ, କୌଣସି ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ନ ହେଲେ ସେ ସ୍ତ୍ରୀ' ତା' ଠାରୁ କାହିଁ ଶୁଣି ବିଶ୍ୱାସ କରେନି ।"

—"ତୋ'ଠାରୁ ବିକାଶ ଗ୍ରସ୍ତର ଏଠିକି ଆସିବା ସମ୍ବାଦ ପାଇବା ପର ଠାରୁ ଏଇ ଆଶଙ୍କା ମୋ' ମନ ଭିତରେ ବସା ବାନ୍ଧି ସାରିଲାଣି । ଯା' ପୁଅକୁ ସାପ କାମୁଡ଼େ ତା' ମା' ପାଳ ଦଉଡ଼ି ଦେଖିଲେ ଡରେ । କହ ପ୍ରିତା ମୁଁ କ'ଣ କରିବି ?"

—"ସବୁ ପରିସ୍ଥିତିକୁ ମୁକାବିଲା କରିବା ପାଇଁ ଆମର ଯଥେଷ୍ଟ ଧୈର୍ଯ୍ୟ ରହିବା ଦରକାର । ନ ହେଲେ ଆମେ ବାହାରକୁ ନ ଆସି ୨୪ ଘଣ୍ଟା ରୋଷେଇ ଶାଳରେ ରହିବା ଉଚିତ୍ ଥିଲା ।"

—"ତୁ ଯାହା କହ ପ୍ରିତା, ମୋ' ମନ କାହିଁକି ବୁଝେନା ।"

ବାଣୀବିହାର ପରିଜା ଲାଇବ୍ରେରୀରେ ସନ୍ଧ୍ୟା । ଅମିତା ଗୋଟିଏ କୋଣରେ ଏକା ବସି ଗଣିତ ମାଗାଜିନ୍‌ଟିଏ ଖେଳାଉଥାଏ । ହଠାତ୍ ଚମକି ପଡ଼ିଲା କାହା କଣ୍ଠରୁ ତା' ନାଁଟି ଶୁଣି । ବିକାଶ ଗ୍ରସ୍ତ ବହି ଖଣ୍ଡେ ଧରି ତା ପାଖରେ ଛିଡ଼ା ହୋଇ କହିଲା, "ଆରେ ଅମିତା ! ତୁମେ ଏଠି କେତେବେଳୁ ?" ଏକ ଅଜଣା ଭୟରେ ହୃଦୟ ତା'ର ସ୍ପନ୍ଦିତ ହେବାକୁ ଲାଗିଲା କ୍ଷିପ୍ର ଗତିରେ । ହଠାତ୍ ତା. ପାଟିରୁ ବାହାରି ଆସିଲା, "ଏଇ ଅଳ୍ପ ସମୟ ହେବ ।"

"ମୁଁ ଏଇ ଲ' କଲେଜରେ ଆଡ୍‌ମିସନ ନେଲି । ତୁମେ ଏମ୍. ଏସ୍. ସି. କରୁଛ ନିଶ୍ଚୟ ?"

"ହଁ ।"

"ତୁମେ ଏଠିକି ପଢ଼ିବାକୁ ଆସିବ ବୋଲି ମୁଁ ଜାଣିଥିଲି । ମୋ'ର ଏଠିକି ଆସିବା କଥା ତୁମେ ବୋଧହୁଏ ଜାଣି ନଥିବ ?"

—"ନା ।"

"ତୁମେ କଟକ ଛାଡ଼ି ଏଠିକି ଆସିଲ କାହିଁକି ?"

—"ବାଣୀବିହାର କ୍ୟାମ୍ପସର ମହତ୍ତ୍ୱ ଉପଲବ୍ଧି କରିବା ପାଇଁ ।"

"ମୁଁ ଆସିଲି ବାର୍ଣ୍ଣୀବିହାରର ମୁକ୍ତ ହାଓ୍ୱାରେ ନିଜକୁ ମିଶେଇ ଦେଇ ଜୀବନର ପ୍ରତିଟି ମୁହୂର୍ତ୍ତିକୁ ଉପଭୋଗ କରିବା ପାଇଁ । ତୁମେ ବୋଧହୁଏ ହଷ୍ଟେଲରେ ରହୁଛ ?"

—"ହୁଁ ।"

—"ଯେ କୁଆ ଗୁନ୍ଦ, ତା'ର ରହିବା ପାଇଁ ସରକାର କିପରି ସୁ-ବ୍ୟବସ୍ଥା କରିଛନ୍ତି ଦେଖ । ଆମ କଥା ପଚୁରେ କିଏ ? ମୁଁ ରହୁଛି ଏମ୍. ଏଲ୍. ଏ. କଲୋନୀରେ । ଆଚ୍ଛା କୁହତ, ମଉସା ମାଉସୀ ତୁମକୁ ଏକା କିପରି ଛାଡ଼ିଲେ ?"

—"ଜ୍ଞାନ ଆହରଣ କରିବାକୁ ହେଲେ ସୁଖ ସ୍ୱାଛନ୍ଦ୍ୟକୁ ତ ଆବୋର ବସିଲେ ହେବନି !"

—"ମଉସା ମାଉସୀଙ୍କର ତୁମେ ଏକମାତ୍ର ସନ୍ତାନ । ତେଣୁ ମୋ' ମତରେ ତୁମେ ତାଙ୍କର ପାଖରେ ରହି କଟକରେ ପଢ଼ିଥିଲେ ଭଲ ହୋଇଥା'ନ୍ତା । "

—"ବାପାଙ୍କର ଏଠିକି ବଦଳି ହୋଇ ଆସିବାର ସମ୍ଭାବନା ଅଛି । ତେଣୁ ମୁଁ ଯେତେବେଳେ ବାର୍ଣ୍ଣୀବିହାର ପ୍ରସଙ୍ଗ ଉଠାଇଲି ସେ ବିନା ଦ୍ୱିଧାରେ ସମ୍ମତି ଦେଲେ ।"

"ମୁଁ ତୁମର ସହପାଠୀ । ମୁଁ ଏଠି ଥିବାଯାଏ ତୁମର କି କିଛି ଅସୁବିଧା ହେବନି । ଯେତେବେଳେ ଯେଉଁ ପ୍ରକାର ସାହାଯ୍ୟ ଚାହିଁବ ମୁଁ ଅକୁଣ୍ଠିତ ଚିତ୍ତରେ ଯୋଗାଇ ଦେବି । ଦୀର୍ଘ ୩ ବର୍ଷ କାଳ ସାଥୀ ହୋଇ ପାଠପଢ଼ି ଆସିଲେ । ଏତିକି ଟିକିଏ ମୁଁ କ'ଣ କରି ପାରିବିନି ?"

"ତୁମକୁ ଧନ୍ୟବାଦ ।"

—"ସତରେ ଅମିତା, ଏଠିକା ପରିସ୍ଥିତି ସଂପୂର୍ଣ୍ଣ ଭିନ୍ନ । ପଦେ ପଦେ ଏଠି ବିପଦ । ବିପଦ ତୁମର ଚାରିପାର୍ଶ୍ୱରେ ଲାଗି ପରି ରହିଛି । ମୋ' ଯୋଗୁ ତୁମର କେତେ ସାହସ । ନୁହେଁ କି ?"

"ଅବଶ୍ୟ" ।

"ଅବଶ୍ୟ କାହିଁକି । ନିଶ୍ଚିତ ବୋଲି କହୁନ । ମୋତେ କ'ଣ ଏତେ ପର ବୋଲି ଭାବୁଛ ? ତୁମର ଅମର୍ଯ୍ୟାଦା ହେଲେ ମୋତେ କ'ଣ ବାଧିବନି ? ହେଁ

କ'ଣ କହୁଥିଲି କି ତୁମେ ଏକ ନମ୍ବର ଲେଡିକ ହଷ୍ଟେଲର ୫୫ ନମ୍ବର ରୁମ୍‌ରେ ରହୁଛ ତ ?"

ଅମିତା ମନେ ମନେ ପ୍ରମାଦ ଗଣୁଥିଲା । ବାଣୀବିହାର ଆସୁ ଆସୁ ଯେଉଁ ପିଲି ତା ସମ୍ପର୍କରେ ଏତେ ତଥ୍ୟ ସଂଗ୍ରହ କରି ସାରିଲାଣି ଏ ଦୁଇ ବର୍ଷ ତା'ର ସମ୍ମୁଖରେ ସେ କିପରି କଟିବ ସେଇ ଆଶଙ୍କାରେ ତା' ଦେହର ପ୍ରତିଟି ରନ୍ଧ୍ରରେ ଯେପରି ଇଲେକ୍‌ଟ୍ରିକ୍ କରେଣ୍ଟ ପ୍ରବେଶ କରିଯାଉଥିଲା । ଭୟରେ ତା' ପାଟିରୁ କଥା ବାହାରୁ ନଥିଲା ।

—"କ'ଣ ଏତେ ଚିନ୍ତା କରୁଛ ?"

—"ଉଁ ନାଇଁତ !"

- "ଆଶ୍ଚର୍ଯ୍ୟ ହେଉଛ, ତୁମକୁ ନ ପଚାରି ତୁମ ବିଷୟରେ ମୁଁ ଏତେ କଥା କିପରି ଜାଣିଲି ! ତୁମେ ଥିଲ ରେଭେନ୍‌ସାର କୃତୀ ଛାତ୍ରୀ । ସେଠି ଥିଲାବେଳେ ଚେଷ୍ଟା ନ କଲେ ବି ତୁମ ସମ୍ପର୍କରେ ଅନେକ ତଥ୍ୟ ଆପେ ଜଣା ପଡ଼ି ଯାଉଥିଲା । ଏବେ ଏଠିକି ଆସିଲ, ତୁମ ଭଲ ମନ୍ଦ ସମ୍ପର୍କରେ ଜାଣିବା ପାଇଁ ଇଚ୍ଛା କରିବା ବୋଧହୁଏ ମୋ' ମତରେ ଭୁଲ ନୁହେଁ । କ'ଣ କହୁଛ ?"

ଅମିତା ମାଗାଜିନ୍‌ଟିର ପୃଷ୍ଠା ଉପରେ ପୃଷ୍ଠା ଓଲଟାଇ ଯାଉଥିଲା ଅଲକ୍ଷ୍ୟରେ ।

ବିକାଶ ପୁଣି କହିଲା, "ଉଠ ଯିବା ।"

ଆଶ୍ଚର୍ଯ୍ୟ ହୋଇ ଅମିତା କହିଲା, "କୁଆଡ଼େ ?"

—"କୁଆଡ଼େ ?"

—"କ୍ୟାଣ୍ଟିନ୍ ।"

—"ମୁଁ ଏବେ ଖାଇ ଆସିଛି । ଦୟାକରି ମୋତେ ବାଧ୍ୟ କରନା ।"

—"ହଁ ମୁଁ ମନା କରୁନ । ତୁମେ ଖାଇଥିବ, ଥୁକ୍ତ ଟିକେ, କମ୍ପା ବରା ହ'ନ୍ତା । ଟିକିନ୍ ମାନେ ତ ଏୟା ।"

—"ହୁଁ ।"

"ମୋ' ସଙ୍ଗରେ ଆସ । ବାର୍ଣ୍ଣିଭାଷ୍ୱାର ଆସିଲା ଘରେ ତୁମକୁ ମୁଁ ପ୍ରଥମ ଥର ପାଇଁ ଡାକୁଛି । ମନା କରନା । ମୋର ଅନୁରୋଧ ।"

—"ତୁମେ ଆଜି ଯାଅ । ଆଉ କେବେ ମୁଁ ତୁମ ସଙ୍ଗରେ ଯିବି ।"

—"ଅନୁରୋଧ ରକ୍ଷି ଆଜି ମୋ ସଙ୍ଗରେ ଆସ । ଆଉ କେବେ ତୁମକୁ ଏମିତି ଅନୁରୋଧ କରିବନି । ଆଜି ମୋ'ର ମା'ଙ୍କର ଶ୍ରାଦ୍ଧ ଦିନ ।"

— "ତେବେ ତୁମେ ଆଜି ଘରକୁ ଯାଇ ନାହଁ କାହିଁକି ?"

"ଏଇତ, ଘଣ୍ଟାଏ ତଳେ ଫେରୁଛି । ତୁମକୁ ଖୋଜି ଖୋଜି ଏଠି ପାଇଲି । ଉଠ ଯିବା । ଦୁହେଁ ଉଠି ବାହାରକୁ ଆସିଲେ ।"

— "ତୁମେ ମୋତେ ଆଜି ଅସୁବିଧାରେ ପକାଇଲ ।"

"ମୋ ପାଇଁ ଅସୁବିଧାରେ ପଡ଼ିଲେ ତୁମର କିଛି କ୍ଷତି ହେବ ବୋଲି ମୁଁ ଭାବୁନି ।"

—"ଲାଭ କ୍ଷତି କଥା ମୁଁ ଭାବୁନି ।"

—"ଆଉ କ'ଣ ବିକାଶ ଘୋଷ ସାଥିରେ ଏକୁଟିଆ ଗଲେ ତୁମର ଅସମ୍ମାନ ହେବ ବୋଲି ଭାବୁଛ ?"

କ୍ୟାଣ୍ଟିନ୍‌ରେ ପହଞ୍ଚି ଦୁହେଁ ପଛ ବେଞ୍ଚରେ ବସିଲେ । ବୟ୍ ଆସି ଅର୍ଡର ମାଗିଲା । ସିଙ୍ଗାଡ଼ାଭୋଗ, ଛେନାପୋଡ଼, ମାଲପୁଆ, ରସାବଳୀ, ଗୋଲପଜାମୁ ଇତ୍ୟାଦିରୁ ଦୁଇ ଦୁଇ ପ୍ଲେଟ୍ ଆଉ ଶେଷରେ ଫଳରସ ଦୁଇ ଗ୍ଲାସ ପାଇଁ ଅର୍ଡର ଦେଇ ବିକାଶ ଘୋଷ ନୀରବ ହେଲା ।

"ଅଯଥାରେ ଏତେଗୁଡ଼ାଏ ଜିନିଷର ଅର୍ଡର ଦେଇ ତୁମେ ଠିକ୍ କଲନି ।"

—"ଏ ତ ସାମାନ୍ୟ, ଯା ପରେ ଆହୁରି କିଛି ଜିନିଷର ବ୍ୟବସ୍ଥା ବି ଅଛି ।"

—"ନାଇଁ ନାଇଁ ମୋ' ଶୁଣ । ତୁମେ ମୋତେ ହଇରାଣ କରନା ।"

- "ହସି ହସି ବକାଶ କହିଲା କିଛି ନ ପାଇଲେ ଲୋକ ହଇରାଣ ହୁଅନ୍ତି, ତୁମେ ଠିକ୍ ଓଲଟା କହୁଛ । ହଁ ମୁଁ ଗୋଟେ କଥା ଭାବୁଛି, ମଉସାଙ୍କର ଏଠିକି ବଦଳି ହେଲେ ସେ କ'ଣ କଟକ ଛାଡ଼ି ଚାଲି ଆସିବେ ?"

—"ହୁଁ ।"

—"କାହିଁକି, କଟକରେ ରହି ଭୁବନେଶ୍ୱରରେ ତ ଅଫିସ କରିହେବ ।"

—"ଏତେ କଷ୍ଟ ସେ କରିପାରିବେନି । ତା' ପରେ କଟକରେ ରହି ଭୁବନେଶ୍ୱରରେ ଅଫିସ କଲେ ଲାଭ ବା କ'ଣ ହେବ ? ତୁମପରି ସେଠି ତ ଆମର ନିଜ ଘର ନାହିଁ ।"

—"ମଉସାଙ୍କର ବଦଳି କ୍ୟାନ୍‌ସେଲ୍ କରିବାର ବ୍ୟବସ୍ଥା କଲେ କେମିତି ହୁଅନ୍ତା ?"

—"ଏସବୁ ବଡ଼ ବଡ଼ ଲୋକଙ୍କ କଥା, ଆମ କଥା କିଏ ଶୁଣିବ ? ତା'ପରେ ବାପା ତାଙ୍କ ବଦଳି କ୍ୟାନ୍‌ସେଲ୍ କରିବାର ସପକ୍ଷରେ ନୁହଁନ୍ତି ।"

—"ମୁଁ କ'ଣ କହୁଥିଲି କି କେଉଁ ମନ୍ତ୍ରୀଙ୍କୁ କହିଲେ ଏ କାମଟା ସୁରୁଖୁରୁରେ ହୋଇ ପାରିବ ଜାଣିଲେ ତା'ର ବ୍ୟବସ୍ଥା କରନ୍ତେ ।"

—"ତୁମର ଏ ପ୍ରସ୍ତାବ ବାପା କେତେଦୂର ଗ୍ରହଣ କରିବେ ମୁଁ ଭାବି ପାରୁନି ।"

—"ମୋ' କଥା ମଉଷାଙ୍କ ମନକୁ ବେଶ୍ ପାଇବ ।"

—"ଉଠ ଯିବା । ସଂଧ୍ୟା ସାଢ଼େ ଛ'ଟା ହେଲାଣି ।"ଆଜି ପାଠପଢ଼ା କିଛି ହୋଇ ପାରିଲାନି ।

ଅମିତା,

ଶୁଭେଚ୍ଛା ନେବ । ମଉସା ମାଉସୀଙ୍କୁ ପ୍ରଣାମ ଜଣେଇବ । ଜୀବନରେ ପ୍ରଥମ କରି ତୁମ ପାଖକୁ ଲେଖୁଛି । କୌଣସି ଝିଅ ପାଖକୁ ଚିଠି ଲେଖିବା ଆଜି ମୋ'ର ପ୍ରଥମ । ଜାଣେନି ଏହାର ପ୍ରତିକ୍ରିୟା କ'ଣ ହେବ । କଟକ ଷ୍ଟେସନ

ଛାଡ଼ିଲ ବେଳେ ତୁମେ ଅଶ୍ରୁଳନୟନରେ ଅନୁରୋଧ କରିଥିଲ ଏଠି ପହଞ୍ଚିଲା ପରେ ତୁମକୁ ଜଣେଇବାକୁ । ସେଇ ସାହସରେ ଲେଖୁଛି ଯଦିଓ ଚାଲି ଆସିବା ମୋ'ର ଦୁଇ ମାସ ହୋଇଗଲାଣି ।

ତୁମ ଜନ୍ମଉତ୍ସବରେ ଯେଉଁ ଦିନ ମୁଁ ଯୋଗ ଦେଲି ସେଇ ଦିନଠାରୁ ତୁମ ପରିବାରର ପ୍ରତ୍ୟେକଙ୍କ ସ୍ନେହଁରେ ବାନ୍ଧି ହୋଇଗଲି । ମଉସା ମାଉସୀଙ୍କଠାରୁ ମୁଁ ମୋ'ର ହଜିଲା ପିତାମାତାଙ୍କର ଆଦର ପାଉଥିଲି । ଜାଣେନି କି ସ୍ୱାର୍ଥ ନେଇ ତୁମେମାନେ ମୋତେ ଏତେ ଆଦର କରିଥିଲ ? ମୋ' ନିଜ ବ୍ୟକ୍ତି ମୋ'ର ଏ ଦୁନିଆରେ ଆଉ କେହି ନାହିଁ ।

ମୁଁ କିନ୍ତୁ ଅନେକ ପରିମାଣରେ ସ୍ୱାର୍ଥପର । ତୁମମାନଙ୍କଠାରୁ ଆଦର ଯତ୍ନ ପାଇବା ମୋ' ସ୍ୱାର୍ଥର ପରିସର ଭିତରେ । ତୁମଠାରୁ ସବୁ ପାଇ ତୁମକୁ କିଛି ଦେଇନି । ତୁମ ଆଖିରେ ଅଶ୍ରୁର ପ୍ଲାବନ ଦେଖି ବି ମୋ'ର ଏଇ ସ୍ୱାର୍ଥପର ହାତ କେବେ ଆଗେଇ ଯାଇନି ତୁମର ସେଇ ତତଲା ଲୁହକୁ ଟିକିଏ ପୋଛି ଦେବାପାଇଁ ।

ତୁମର ମୋ' ଉପରେ ଅନେକ ଅଭିମାନ । ସେ ଅଭିମାନର ମୂଲ୍ୟ ଯେ କେତେ ହୋଇପାରେ ତାହା ଏବେ ମୁଁ ଉପଲବ୍ଧି କରୁଛି ।

ହଷ୍ଟେଲର ଏଇ ଛୋଟିଆ କୋଠରୀଟିର ଚାରିକାନ୍ଥ ଭିତରେ ମୁଁ - - ଶେଖର ଚୌଧୁରୀ । ତୁଳୁଫଟାଇ କାନ୍ଦିଲେ କେହି ଜଣେ ବି ମନକଥା ବୁଝିବାକୁ ଧାଇଁ ଆସିବନି । ହେଲେ ଦିନ ଥିଲା ଯେତେବେଳେ ମୋ'ର ସାମାନ୍ୟ ଟିକିଏ ଅସୁବିଧା ଦେଖିଲେ ମାଉସୀ ବ୍ୟସ୍ତ ହୋଇ ଯାଉଥିଲେ । ତୁମ ଆଖିରୁ ଲୁହ ଝରି ପଡ଼ୁଥିଲା । ସେ ତ ଲୁହ ନୁହେଁ, ମୁକ୍ତା ମୁକ୍ତାକୁ ଧରି ରଖିବାର ସାମର୍ଥ୍ୟ ମୋ'ର ବା କାହିଁ ?

ମୁଁ ତୁମ ଜ୍ଞାତି ନୁହେଁ, କିମ୍ବା ତୁମ କୁଟୁମ୍ବ ବି ନୁହେଁ । ତଥାପି ମୁଁ ଥିଲି ତୁମମାନଙ୍କର ଅତି ଆଦର ।

ଆଜି ମୁଁ ଅନେକ ଦୂରରେ । କିଏ ଜାଣେ କେବେ ଫେରିବି ? ଫେରିଲା ବେଳେ ତୁମ ମନରେ ମୁଁ ଆଉ ଥିବି ତ ? ଭଲରେ ଥିବ, ଲେଖୁଛି ।

'ଶେଖର'

ଆଗ୍ରହରେ ଅମିତା ଚିଠି ଖୋଲିଲା । ପଢ଼ି ସାରିଲା ପରେ ଦୁଇ ଟୋପା ଲୁହ ତା'ର ଆରକ୍ତ ଗଣ୍ଡ ଦେଇ ବହି ପଡ଼ିଲା ।

ଶେଖର,

ତୁମ ଚିଠି ବହନ କରି ଆଣିଥିବା ପୁଞ୍ଜିଭୂତ ଦୁଃଖର ବୋଝକୁ ମୁଁ କ'ଣ ସହି ପାରିବି ? ତଥାପି ବି ଆଜି ତୁମେ ଏତେ ଅବୁଝା । ତୁମ ଚିଠିର ଶେଷ ଧାଡ଼ି ମୋ' ଉପରେ କି ପ୍ରଭାବ ପକାଇବ ଥରେ ବି ଚିନ୍ତା କଲନି ।

ତୁମ ମୂର୍ତ୍ତିର ପ୍ରତିବିମ୍ବ ଏବେ ବି ମୋ' ପ୍ରାଣରେ ପ୍ରତିଫଳିତ । ଅନେକ ଦୂରରେ ଆଜି ଆମ ହଜିଲା ଅତୀତ । ଜୀବନ ସାରା ତୁମରି ପାଇଁ ହସିବି ଆଉ କାନ୍ଦିବି । ଏଇ ବଜ୍ରଶପଥ ନେଇ ତୁମ ଫେରନ୍ତା ବାଟକୁ ଗୁହିଁଛି ।

ମୋର ଏଇ ଶ୍ରେଷ୍ଠ ଅନୁରୋଧ ରଖିବ । ସ୍ନେହ ସାଗରର କୁଟାକାଠି ନେଇ ପ୍ରୀତିପ୍ରଣୟର ମାଟିଗୋବରରେ ଆମେ ରଚିବା ଏକ ଛୋଟିଆ ନୀଡ଼ । ସେ ନୀଡ଼ରେ କପୋତ କପୋତୀ ତୁମେ ଆଉ ମୁଁ । ସେ ସ୍ୱପ୍ନ ମୋ'ର କେଡ଼େ ମଧୁର ଆଉ ରସ ପୂର୍ଣ୍ଣ ।

ଆଗାମୀ ସ୍ୱପ୍ନରେ ବରବେଶ ହୋଇ ତୁମେ ଚାଲିବ ଆଗେ ଆଗେ, ଆଉ ନବ ବଧୂର ଗର୍ବ ନେଇ ତୁମ ପଛେ ପଛେ ମୁଁ ।

ଜାଣେନି ତୁମ ପ୍ରାଣରେ ମୋ' ପାଇଁ ଦରଦ ଅଛି କି ନା, ଆହୁରି ବି ଜାଣେନି ମୋ' ବୁକୁଫଟା କ୍ରନ୍ଦନ ତୁମ କାନରେ ବାଜିବ କି ନା । ରହୁଛି ।

'ଅମିତା'

ଚିଠି ପଢ଼ି ବିକାଶ ରାସ୍ତେ ହସି ଉଠିଲା । ପକ୍କା ଘରର ଗୃହ କାନ୍ଥ ଭିତରେ ତା'ର ପ୍ରାଣଖୋଲା ଅଟ୍ଟହାସ୍ୟ ପ୍ରତିଧ୍ୱନିତ ହେଉଥିଲା । ଆକଣ୍ଠ ପାନ କରିଥିବା ଶରୀରର ଭାରସାମ୍ୟ ରକ୍ଷା କରି ପାରୁ ନ ଥିଲା ସେ । ଫରେନ୍ ସିଗାରେଟ୍‌ର ଧୂମ କୁଣ୍ଡଳୀ ଖେଳି ବୁଲୁଥିଲା କୋଠରୀ ସାରା । ଟଳଟଳ ଅବସ୍ଥାରେ ବିକୃତ ମୁଖରୁ ତା'ର ହସର ଅସରନ୍ତି ଫୁଆରା । ଶେଖର ଚୌଧୁରୀ, ତୁମ ପ୍ରତି ମୋର ଦୟା ହୁଏ । କାହିଁକି ତୁମେ ମୋ' ଖାଦ୍ୟ ଉପରେ ଦୃଷ୍ଟି ପକାଇ ଶେଷରେ ନିରାଶ ହେବ ? ଭଗବାନ ତୁମକୁ ସଦ୍‌ବୁଦ୍ଧି ଦିଅନ୍ତୁ । ତୁମେ ଅମିତାକୁ ପାଇବାର ଆଶା ପରିହାର କର । ମୁଁ ଜାଣେ ଅମିତା ତୁମ ପ୍ରତି ଅନୁରକ୍ତ । ତା'ର ଏ ସ୍ୱଭାବକୁ

ଯେନତେନ ପ୍ରକାରେଣ ମୋତେ ବଦଳାଇବାକୁ ପଡ଼ିବ । ତୁମେ ଦୁହେଁ ପରସ୍ପରକୁ ଯେତେ ଚିଠି ଲେଖିବ ସେ ସବୁ ଆସିବ ମୋ ପାଖକୁ । କହିପାରିବ ତୁମ ଦୁହିଁଙ୍କ କୃତୀ ମୋ ହାତକୁ କପରି ଆସିବ ? ଟଙ୍କା ; ଟଙ୍କା ସବୁ କିଛି କରିପାରେ । ଡାକ ପିଅନ କାଲୁ ମିଆଁକୁ ମୋଟା ଟଙ୍କା ଦେଇ ମୁଁ ପୋଷା ମନେଇଛି । ତାକୁ ଗନ୍ଧ ଶୁଙ୍ଘେଇ ବଶ କରିଛି, ସେ ମୋ ବୋଲ ଠିକ୍ ଠିକ୍ ମାନିବ । ଟଙ୍କା ପାଇ ବେଟା ଖୁବ୍ ଖୁସି ଅଛି । ତୁମ ଦୁହିଁଙ୍କ ମନର ନିଆଁ କୁହୁଳି କୁହୁଳି ଜଳିବା ଯାଏ ମୁଁ ଅପେକ୍ଷା କରିବି । ତୁମ ଦୁହିଁଙ୍କ ସନ୍ଦେହ ପରସ୍ପର ପ୍ରତି ବଢ଼ି ବଢ଼ି ଯେତେବେଳେ ଚୂଡ଼ାନ୍ତରେ ପହଞ୍ଚିବ, ସେତେବେଳେ ଦେଖିବ ମୁଁ କ'ଣ କରି ପାରୁଚି?

ବୁଝିଲ ଅସ୍ମିତା, ତୁମେ ଯେତେ ଚେଷ୍ଟା କଲେ ବି ମୋ' କବଳରୁ କେବେ ଖସିଯାଇ ପାରିବନି । ବିକାଶ ରାୟଙ୍କର ଆଖି ଯାହା ଉପରେ ପଡ଼ିଛି ସେ ତାକୁ ନିଃଶେଷ ନକରି ଛାଡ଼େନି । ତୁମେତ ସାମାନ୍ୟ ମାତ୍ର । ତୁମକୁ ବଶ କରିବାର ମନ୍ତ୍ର ମୋତେ ବେଶ୍ ଜଣା । ତୁମକୁ ପାଇବା ପାଇଁ ମୋତେ ଜାଲ ବଛେଇବାକୁ ହେବ । ତୁମେ ଯଦି ସେଥିରେ ପଡ଼ିଯାଅ ତେବେ ମୁଁ ଜିଅନ୍ତା ଗୋହି ମାଛଟିଏ ଅକ୍ଷତ ଅବସ୍ଥାରେ ପାଇଯିବି । ସେଥିରେ ଯଦି ତୁମେ ଧରା ନ ଦେଲ ତେବେ ତୁମକୁ କ୍ଷତ ବିକ୍ଷତ କରି ମୋ' ମନର ଅଭିଳାଷ ମେଣ୍ଟାଇବି । ଏବେ ବି ତୁମେ ଶେଖରର ପ୍ରତି ଅନୁରକ୍ତା । ଜାଣ ! ତାର ଜୀବନ ନାଟିକା ମୋ' ହାତରେ ! ତୁମକୁ ବାଟକୁ ଆଣିବାକୁ ହେଲେ ତାକୁ ଶେଷ କରି ଦେବାକୁ ହେବ । ତା'ର ମୃତ୍ୟୁ ଖବର ଯେତେବେଳେ ତୁମେ ପାଇବ, ସେତେବେଳେ ନିଶ୍ଚୟ ଭାବିବ, "ଶେଖର ସାଥିରେ ତୁମର ସମ୍ପର୍କ କେବଳ କ୍ଲାସମେଟ୍ ହିସାବରେ କେବେ ଥିଲା ।" ଏତକ କହି ତାଚ୍ଛଲ୍ୟର ହସ ହସିଲା ବିକାଶ ରାୟ ।

ଜବାହରଲାଲ ୟୁନିଭରସିଟି ଲାଇବ୍ରେରୀ । ଲାଇବ୍ରେରୀ ରାତି ୧୨ଟା ଯାଏ ଖୋଲା । ଅନେକ ଛାତ୍ରଛାତ୍ରୀ ସେତେବେଳ ଯାଏ ପ୍ରାୟ ଲାଇବ୍ରେରୀରେ ଥା'ନ୍ତି । କେଉଁମାନେ ବହି ପଢ଼ିବାରେ ନୋଟ୍ କରିବାରେ ବ୍ୟସ୍ତ ଥା'ନ୍ତି ତ କେଉଁମାନେ ଯୋଡ଼ି ଜାଉଁଳା ହୋଇ ଗପ ଜମେଇ ଥା'ନ୍ତି ।

ସବୁଦିନ ପରି ଆଜି ବି ଶେଖର ଲାଇବ୍ରେରୀକୁ ଆସିଛି । ଏମ୍ ଏସ୍. ସି. ପରୀକ୍ଷା ଆଉ ମାତ୍ର ଦୁଇ ମାସ ବାକି ରହିଲା । ପରୀକ୍ଷାର ଦୃଶ୍ୟ ତା' ଆଖି ଆଗରେ

କାଟ ଯାଉଥିଲା । ଅନେକ ଆଶା ନେଇ ସେ ଦିଲ୍ଲୀ ଆସିଛି । ସେ ଆଶା ପୂରଣ କରିବା ପାଇଁ ତାକୁ ଅକ୍ଲାନ୍ତ ପରିଶ୍ରମ କରିବାକୁ ହେବ । ଆଶା ପୂରଣ ନ ହେଲେ ଦିଲ୍ଲୀ ଆସିବା ତା'ର ବୃଥା ହୋଇଯିବ । ପ୍ରଫେସର ଡକ୍ଟର ମହାପାତ୍ରଙ୍କ କଥା ପଦକ ତା'ର ଏବେ ବି ମନେ ଅଛି ।

ଯେଉଁଦିନ ଶେଖର ଜେ. ଏନ୍. ୟୁ.ରୁ ଇଣ୍ଟିମେସନ୍ ପାଇଲା ସେଦିନ ସେ ଧାଇଁ ଯାଇଥିଲା ପ୍ରଫେସରଙ୍କୁ ଦେଖା କରିବା ପାଇଁ । ପ୍ରଫେସର ସେଦିନ ତାକୁ ଆଶୀର୍ବାଦ ଦେଇ କେତେ ବୁଝେଇ କହିଥିଲେ, "ଦିଲ୍ଲୀ ତୁମ ପାଇଁ ସମ୍ପୂର୍ଣ୍ଣ ନୂଆ । ସେଠି ଜଗିରଖି ଚଳିବାକୁ ହେବ । ତୁମେ ଯେଉଁ ମହତ୍ ଉଦ୍ଦେଶ୍ୟ ନେଇ ସେଠିକି ଯାଉଛ ତାହା ସାଧନ କରିବାରେ ଯେପରି ତ୍ରୁଟି ନ କର । ପାଠପଢ଼ା ପ୍ରତି ସବୁବେଳେ ଯତ୍ନବାନ ହେବ ।" ସେଇ କଥା ଆଜି ଗୋଟି ଗୋଟି ହୋଇ ମନେ ପଡ଼ି ଯାଉଛି ।

ହାତ ଘଡ଼ିକୁ ଚାହିଁଲା ଶେଖର, ରାତି ୧୧ଟା ହେଲାଣି । ଏତେ ରାତି ଯାଏ ସେ କେବେ ରହେନି ଲାଇବ୍ରେରୀରେ । ତରତର ହୋଇ ବହିପତ୍ର ଧରି ବାହାରକୁ ବାହାରି ଆସିଲା ସେ । ଭାବନାସିକ୍ତ ହୃଦୟରେ ଥରେ ଆକାଶ ଆଡ଼େ ଚାହିଁଲା ।

ଆକାଶ ଟିକିଏ ମେଘୁଆ । ମେଘୁଆ ଆକାଶରେ କାଳି ଜହ୍ନ । ରାତିଟା କେମିତି ମାଡ଼ି ମାଡ଼ି ପଡ଼ୁଛି । ଏଇ ଟିକିଏ ପୂର୍ବରୁ ବୋଧହୁଏ ଝିପ୍‌ଝିପ୍ ବର୍ଷା ହୋଇ ଯାଇଛି । ପିଚୁରାସ୍ତା ଟିକିଏ ଓଦାଳିଆ ଜଣା ପଡ଼ୁଛି । ଓଦା ମାଟିର ବାସ୍ନା ମନଟାକୁ କେମିତି ହାଲ୍‌କା କରି ଦେଉଛି, ଧୀର ପାଦରେ ହଷ୍ଟେଲ ଆଡ଼େ ମୁହାଁଇଲା ଶେଖର ।

ଇଉକାଲି ପଟାସ ବୃକ୍ଷର ପତ୍ରମାନେ ଦୋହଲି ଦୋହଲି ଖେଳୁଥିଲେ ମୃଦୁ ହିଲ୍ଲୋଳରେ । ସବୁ ପତ୍ରରୁ ଝରି ପଡ଼ୁଥିବା ବର୍ଷା ବିନ୍ଦୁଗୁଡ଼ିକ ଝିଲ୍ଲୀଙ୍କ ଝରା ପତ୍ର ଉପରେ ପଡ଼ି କେମିତି ଏକ ଅହେତୁକ ଭାବନା ସୃଷ୍ଟି କରୁଥିଲେ ଶେଖର ମନରେ । ଶେଖର କ୍ରମେ ତା'ର ଗତି ବେଗ ବଢ଼ାଇଦେଲା । ଅଚାନକ ଏକ ଜୋର୍ ଧକ୍କାରେ ତଳେ ମୁହଁ ମାଡ଼ି ପଡ଼ିଗଲା ସେ । ମୁହୂର୍ତ୍ତକେ ଫେରି ଚାହିଁ ଦେଖିଲା ତା ସମ୍ମୁଖରେ ୪।୫ ଜଣ କଳା ପୋଷାକଧାରୀ ହାତରେ ଖଣ୍ଡେ ଖଣ୍ଡେ ଲାଠି ଧରି ଦଣ୍ଡାୟମାନ ଯମଦୂତ ଭଳି । ଭୟରେ ଶେଖରର ବାକ୍ୟ ସ୍ଖଳନ, ଆଖି ଧିରେ ଧିରେ ବନ୍ଦ ହୋଇ ଆସିଲା । ଶେଖରର ଅବଶ ଶରୀର ଲେଟି ପଡ଼ିଲା ଲାଠି ମାଡ଼ର ଦାଉ ସହି ନପାରି ।

ରବି ଅସ୍ତାଚଳକୁ ଗଲେଣି । ବଗୁଲିଣୀ ମନ୍ଦିର ପ୍ରାଙ୍ଗଣ ମୁଖରିତ ହୋଇ ଉଠିଲାଣି । ଆଉ ଅଳ୍ପ କେତୋଟି ମୂହୁର୍ତ୍ତ ପରେ ଠାକୁରଙ୍କ ପୂଜା ଅର୍ଚ୍ଚନା ସରିଯିବ । ଖୋର୍ଦ୍ଧା ପ୍ରାଣନାଥ କଲେଜର ଗଣିତ ଅଧ୍ୟାପିକା ମିସ୍ ଅମିତା ଦାସ ଅଲ ଇଣ୍ଡିଆ ରେଡ଼ିଓ, କଟକରୁ ଆସିଥିବା ଚିଠି ଉପରେ ଆଖି ପକାଉଥିଲେ । ଆର ସପ୍ତାହରେ କଟକଠାରେ ଗୀତ ରେକର୍ଡ଼ିଂ ଅଛି । ସ୍ମିତାକୁ ସାଙ୍ଗରେ ନେଇ ଗଲେ ଖୁବ୍ ଭଲ ହେବ । ବାପା, ବୋଉଙ୍କୁ ଅନେକ ଦିନ ହେବ ଦେଖିନି । ଘର ଆଡ଼େ ଟିକେ ବୁଲି ଆସି ହେବ । ସ୍ମିତା ମୋ'ର ଅତି ନିକଟ । ସମସ୍ତେ ମୋତେ ହତାଦର କରି ଚାଲିଗଲାବେଳେ ସେ ମୋତେ ଛାଡ଼ି ଯାଇ ପାରିନି । ତା' ଯୋଗୁ ମୋ'ର ଜୀବନ । ମୋ'ର ଯୋଗୁ ସେ ଏଇ କଲେଜରେ ବର୍ତ୍ତମାନ ଅଧ୍ୟାପିକା ଭାବରେ ରହିଛି । କେତେ ଉଦାର ଆଉ କେତେ ସ୍ନେହୀ ଏଇ ସ୍ମିତା । ହଠାତ୍ ଅମିତାର ଭାବନାରେ ପୂର୍ଣ୍ଣଚ୍ଛେଦ ଟାଣି ଦେଇ କଲିଂବେଲ୍ ବାଜି ଉଠିଲା । ଦରଜା ଖୋଲି ଦେଇ ଅମିତା ଚାହିଁ ରହିଲା ।

କ'ଣ ଘର ଭିତରକୁ ପ୍ରବେଶ ପାଇଁ ଅନୁମତି ମିଳିବ ନା ନାହିଁ ?

—"ଆରେ ବିକାଶ ବାବୁ ଯେ, ଏ ଅସମୟରେ ଗରିବ ଘରେ ପାଦ ପଡ଼ିଲା କେମିତି ?"

—"ଅସମୟ ମାନେ ? ତୁମ ଘରକୁ ଆସିବା ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ଥାଏ ନା' କ'ଣ ?" ଘର ଭିତରେ ପ୍ରବେଶ କରୁ କରୁ କହିଲା ବିକାଶ ଟିକିଏ ହସି ହସି ।

—"ନାଇଁ ସେମିତି କିଛି ନୁହେଁ ଯେ, ଏ...... ତେବେ ଟିକିଏ ବସ, ମୁଁ କଫି ଆଣି ଆସୁଛି ।"

—"ନାଇଁ କାହିଁକି ଏତେ କଷ୍ଟ କରିବ । ମୁଁ ଏବେ ଟିଫିନ୍ ସାରି ଆସୁଛି । ପରେ କେତେବେଳେ ଆସି କଫି ଟିକିଏ ଖାଇଦେଲେ କଣ ହେବନି ?"

—"ନାଇଁ ନାଇଁ, ଏତେଦିନ ପରେ ଯେତେବେଳେ ମୋ ଘରକୁ ଆସିଛ ସାମାନ୍ୟ କଫି ଟିକେ ତିଆରି କରିବା ପାଇଁ କ'ଣ କଷ୍ଟ ହେଉଛି ?"

ଅମିତା ଭିତରକୁ ଗୁଲିଗଲା । ବିକାଶ ଘସ୍ତ ସେ ଘରର ସାଜସଜ୍ଜାକୁ ପ୍ରାଣଭରି ଦେଖି ଯାଉଥିଲା । ଦୁଇ ହାତରେ ଦୁଇ କପ୍ କଫି ଧରି ଅମିତା ପହଞ୍ଚିଲା ।

—"ଆରେ । ଛିଡ଼ା ହୋଇ ସେତିକ ବେଳୁ କ'ଣ ଦେଖୁଛ ।"

—"ଏଇ ତୁମର ରୁଚିପୂର୍ଣ୍ଣ କଳାସ୍ପୃହା କପରି ପରିସ୍ଫୁଟ ହୋଇଛି ଗୃହ କାନ୍ଥରେ ।"

—"ଏତ ମାମୁଲି କଥା । ସବୁ ଓଡ଼ିଆ ଘରର ଝିଅମାନେ ଏମିତି ଘର ସଜାଇ ଥା'ନ୍ତି । ଆଚ୍ଛା ହେଉ କଫି ନିଅ ।"

"କଫି ପିଉ ପିଇ ପଚାରିଲେ ଏବେ କ'ଣ କରୁଛ ?"

—"ବାପାଙ୍କର ଏବେ ହଠାତ୍ ଦେହାନ୍ତ ହୋଇଗଲା । ଲ' ସାରିଲା ପରେ ଭାବିଥିଲି ପ୍ରାକ୍ଟିସ୍ କରିବି । ହେଲେ ତାହା ହୋଇ ପାରିଲାନି । ସବୁ ବ୍ୟବସାୟ ଦେଖିବାକୁ ହେଉଛି ।"

—"(ଦୁଃଖିତ କଣ୍ଠରେ) ତୁମକୁ ଏକା ଏକା ସବୁ ବୁଝିବାକୁ କଷ୍ଟ ହେଉଥିବ ନିଶ୍ଚୟ । କାରଣ ଆପଣଙ୍କ ବାପାଙ୍କର ଜୀବିତାବସ୍ଥାରେ ବି ତୁମେ ଅନେକ ସମୟରେ ଏ ସବୁ ଦେଖାଶୁଣା କରୁଥିଲ ।"

—"କଷ୍ଟ ହେଉଥିବ ନୁହେଁ, ଭୁହ କଷ୍ଟ ହେଉଛି । ହେଲେ କ'ଣ କରିବି ? ଦିନସାରା ପରିଶ୍ରମ କରି କରି ଘରେ ପହଞ୍ଚିଲା ବେଳକୁ ମୋ' ପାଇଁ ଆହା ବୋଲି କହିବାକୁ କେହି ନାହିଁ । କେମିତି ଯେ ବଞ୍ଚିବି ? ଅନେକ ଥର ଭାବିଲିଣି, ଅନେକ ଖୋଜିଲିଣି, ହେଲେ ମନ ବୁଝିଲା ଭଳି ସାଥିଟିଏ କାହିଁ ପାଉନି ।"

—"ତୁମ ପାଇଁ ପୁଣି ସାଥିର ଅଭାବ ? ହସେଇଲେ ଆପଣ ।"

—"ଅଭାବ ବୋଲି ତ କହୁଛି । ସେଇଥି ପାଇଁ ଧାଇଁ ଆସିଛି ତୁମ ଠାରୁ ସାହାଯ୍ୟ ଆଶାରେ । ତୁମେ ଗୁହିଁଲେ ସବୁ ଠିକ୍ ହୋଇଯିବ ।"

—"ତେବେ କୁହ ମୁଁ ତୁମକୁ କି ପ୍ରକାର ସାହାଯ୍ୟ କରି ପାରିବି ।"

—"ମୋତେ ସାହାଯ୍ୟ କରିବାର ପ୍ରତିଶ୍ରୁତି ତୁମ ଠାରୁ ପାଇଲା ପରେ ମୋ'ର ଆଉ ଅଧିକ କ'ଣ ଦରକାର ?

—"ସତରେ ତୁମକୁ ସାହାଯ୍ୟ କରିବାରେ ମୋର ଦ୍ୱିଧା ନାହିଁ ।"

"ତୁମେ ମୋତେ ଅନେକ ଦୁଶ୍ଚିନ୍ତାରୁ ମୁକ୍ତ ଦେଲ । ତେବେ ମୋ'ର ଏଠିକି ଆଜି ଆସିବା ଯଥାର୍ଥ ।

—"ତୁମେ କ'ଣ ଗତ ଜନ୍ମ ଦିନ ଭଲ କଥା କହୁଛ ନା । ସାହାଯ୍ୟ କରିବାକୁ କହୁଛ, ଏ ଯାଏ ତୁମର କୌଣସି ସ୍ଥଳରେ ମୁଁ ଆସିନ ?"

—"ତୁମର ପ୍ରତିଶ୍ରୁତି ମୋ' ପାଇଁ କ'ଣ ବଡ଼ ନୁହେଁ ?"

—"ମୁଁ ଜଣେ ନାରୀ । ମୁଁ ଯେ ତୁମର କି ଉପକାରରେ ଆସିବି ଭାବି ପାରୁନ ।"

"ହେଉ ଗୁଡ଼, ସେ ସବୁ ପରେ । ହଁ ଶେଖର ସମ୍ପର୍କରେ କିଛି ଖବର ରଖିଛ ?"

—"ଅନେକ ଦିନ ହେବ ତାଙ୍କ ସମ୍ପର୍କରେ କିଛି ଜାଣିବାକୁ ପାଉନ ।"

—"କାହିଁକି ? ଅସୁବିଧା କ'ଣ ? ସେ କ'ଣ ଚିଠି ଖଣ୍ଡେ ଲେଖିବାକୁ ସମୟ ପାଉନ ? ହଁ କେଉଁଠୁ ବା ସମୟ ପାଇବ ? ଆଜିର ଶେଖର ତ ଆଉ ସେଦିନର ଶେଖର ନୁହେଁ ।"

—"ବିକାଶ !"

"ଅମିତା । ତୁମେ ଶେଖରକୁ ଯାହା ଭାବୁଛ, ସେ ସେପରି ନୁହେଁ । ଏଠି ତୁମେ ତା' ପାଇଁ ଜାଗର କାଳୁଛ ହେଲେ ସେ ସେଠି ଅନେକ ରାଧାଙ୍କ ମେଳରେ କୃଷ୍ଣ । ତୁମେ ଯେପରି ତା' ମଧ୍ୟରେ ଆକୃଷ୍ଟ ହୋଇ ଏବେବି ତା' ପାଇଁ ଜଳୁଛ, ସେଠି ଯେ ଝିଅମାନଙ୍କର ଅବସ୍ଥା ସେପ୍ରା ହୋଇ ନ ଥିବ କିଏ କହିବ ? ଶେଖର ଏବେ ଗଣିତରେ ଗୋଲ୍ଡ଼ ମେଡ଼ାଲିଷ୍ଟ, ସେ ଜେ. ଏନ୍. ୟୁ. ର ବ ହାଇଏଷ୍ଟ ନମ୍ବର ରଖିଲା ଦାଲ୍ । ତା' ସମ୍ପର୍କରେ ଆହୁରି ଅନେକ ତଥ୍ୟ ମୋ' ପାଖରେ ଅଛି । ଯଦି ବୁଝିବ ପାଇ ପାରିବ । ମୋ' ପାଖରେ ତୁମପାଇଁ ଯଥେଷ୍ଟ ସମୟ ଅଛି । ଥରେ ଚିନ୍ତା କର । ତୁମେତ ଆଉ ଛୋଟ ପିଲା ନୁହଁ ! ତେବେ ମୁଁ ଆସୁଛି ।"

ବେଡ଼୍ରୁମକୁ ଦୌଡ଼ିଯାଇ ତକିଆ ଉପରେ ମୁହଁ ରଖି ପିଲାଙ୍କ ପରି କାନ୍ଦି ଉଠିଲା ଅମିତା । ଶେଖର, ମୁ ଆଜି ଏ କ'ଣ ଶୁଣୁଛି ? ସତରେ କ'ଣ ତୁମେ ମୋତେ ଭୁଲିଗଲ ? ଇଏ ତୁମେ କ'ଣ କଲ ଶେଖର ? ଏ ସବୁ ଯଦି ସତ୍ୟ ହୋଇଥାଏ ତେବେ କ'ଣ କରିବ ମୁଁ ?

—"ଏସବୁ ସଂପୂର୍ଣ୍ଣ ମିଥ୍ୟା ।" କହି କହି ଘର ଭିତରକୁ ପଶି ଆସିଲା ସ୍ମିତା । ହଠାତ୍ ତା'ର ନଜର ପଡ଼ିଲା ସୋଫା ଉପରେ ଘୃଣ୍ଣର ଚଉଡ଼ା ହୋଇ ପଡ଼ିଥିବା କାଗଜ ଉପରେ । ସେଇଟିକୁ ସେ ଉଠାଇ ଆଣିଲା ।

ସ୍ମିତାକୁ ଦେଖି ଅମିତା ତା' ବେକରେ ଝୁଲିପଡ଼ି କାନ୍ଦି କାନ୍ଦି ହୋଇ ବାନ୍ଧ ଉଠିଲା ସ୍ମିତା ତା'ର ଲୁହ ପୋଛୁପୋଛୁ ଆଶ୍ୱାସନା ଦେଇ କହିଲା, "କ'ଣ ହେଲା ଏପରି ପିଲାଙ୍କ ପରି କାନ୍ଦିକି ହେଉଛୁ । କିଏ କ'ଣ କହିଲା ?"

—"ବିକାଶ ଗୁପ୍ତ ଆସିଥିଲା । ଏଇ ଟିକିଏ ପୂର୍ବରୁ ଫେରିଗଲା ।"

—"ଓଃ ଏ ଚିଠି ବୋଧେ ତା'ର ।" ଅମିତାକୁ ଖଟରେ ବସାଇ ସେ ଚିଠି ଖୋଲି ପଢ଼ିବାକୁ ଲାଗିଲା ।

ଅମିତା,

ଆଜି ଅନେକ ଆଶା ନେଇ ଆସିଛି । ବିଶ୍ୱାସ ତୁମେ ମୋତେ ବୁଝିବାକୁ ଚେଷ୍ଟା କରିବ । ଏ ଆଶା ମୋ'ର ଅନେକ ଦିନର ସାଇତା । ଯେତେବେଳେ ତୁମକୁ ମୁଁ ଦେଖେ ତୁମର ମୋହ ମୋତେ ଟାଣି ନେଇଯାଏ ତୁମ ପାଖକୁ । ଅନେକ ଥର ଭାବିଛି ମନ କଥା ତୁମକୁ କହିବି, ହେଲେ କେବେ କୌଣସି ପରିସ୍ଥିତିରେ କହି ପାରେନି । ଆଶା ମୋ'ର ପୂରଣ କରିବ । ମୋ'ର ସବୁ ସମ୍ପତ୍ତି ତୁମରି ପାଦତଳେ । ତୁମକୁ ପତ୍ନୀ ରୂପେ ପାଇଲେ ଜୀବନ ମୋ'ର ଧନ୍ୟ ହେବ ଆଉ ତୁମର ବି ମଙ୍ଗଳ ହେବ । ତୁମକୁ ଏ ପ୍ରସ୍ତାବ ଦେଇ ମୁଁ କିଛି ଭୁଲ୍ କରୁନି । ତୁମେ ମୋତେ ଅନେକ ଦିନରୁ ଜାଣ । ତୁମକୁ ପାଇବାରେ ମୋ'ର ଯଥେଷ୍ଟ ଯୋଗ୍ୟତା ଅଛି ବୋଲି ତୁମେ ଅସ୍ୱୀକାର କରି ପାରିବନି । ଶେଖର ସମ୍ପର୍କରେ ବି ଜାଣିଲି । ଏବେ ତା' ଉପରେ ତୁମର କି ପ୍ରକାର ଭରସା ତୁମେ ଜାଣ । ସତ୍ୟ କହିବାକୁ ଗଲେ ତୁମେ ଏବେ ତା' ମନ ଆଉ ହୃଦୟରେ ନାହିଁ । ତୁମ ପାଇଁ ତା' ହୃଦୟରେ ସଂରକ୍ଷିତ ସ୍ଥାନଟି ଏବେ ଅନ୍ୟ ଦ୍ୱାରା ଅଧିକୃତ । ତେବେ ତୁମେ କୁହ ତୁମର ଗତି ଏବେ କେଉଁଆଡ଼େ ? ଜୀବନକୁ ଢଳଢଳ କରି ନଷ୍ଟ କରିବା ଅପେକ୍ଷା ମୋ' ଉପଦେଶ ମାନିନେଲେ ତୁମର ଚଲାପଥ ସୁଗମ ହେବ । ଏହା ଦ୍ୱାରା ତୁମେ ଦେଖାଇ ଦେବ ଯେ ତୁମେ ବି ଦୁର୍ବଳା ନୁହଁ, ତୁମର ବି ମନ ଆଉ ହୃଦୟ ଅଛି । ସେଥିରେ ବି ଆଶା ପକ୍ଷୀ ବସା ବାନ୍ଧି ସଂସାର ମେଲାଇ ସାରିଲାଣି ।

ସତରେ ତୁମେତ ଆଉ ଛୋଟ ପିଲା ନୁହଁ ସବୁ ଘଟଣା ତୁମକୁ ବୋଝେଇ ବାକୁ ହେବ । ତୁମର ହାତରେ ଦେଶର ଭବିଷ୍ୟତ ନାଗରିକ । ତୁମର ହସ

ଖେଳର ସମସ୍ତ ଆଉ ନାହିଁ, ନାହିଁ ଆଉ ସ୍ୱପ୍ନ ଦେଖିବାର ବେଳ । ବର୍ଷାରେ ଭିଜି ଭିଜି ଚାଲିବାର ଅଭ୍ୟାସ ତୁମର ବଦଳି ଯିବଣି ହୁଏତ । ହୁଏତ ତୁମ ପ୍ରାଣରୁ ଅପସରି ଯିବଣି କଇଶୋରୀ ଜୀବନର ପୁଲକ ଭରା ମାଦକତା ।

ଏବେ ତୁମେ ଜଣେ ସ୍ଥିତପ୍ରଜ୍ଞା ଅଧ୍ୟାପିକା । ଭଲମନ୍ଦ ବିଚାର କରିବାର କ୍ଷମତା ତୁମର ଅନେକ । ଅନେକ ତୁମର ଗମ୍ଭୀର ବ୍ୟକ୍ତିତ୍ୱର ଗଭୀରତା । ତୁମ ଜୀବନକୁ ଠିକ୍ ମାର୍ଗରେ ପରିଚାଳିତ କରିବାର ଅଧିକାରୀ ହିଁ ତୁମେ । ତୁମ ଉପରେ ତୁମର ଭବିଷ୍ୟତର ମାର୍ଗ ନିର୍ଦ୍ଧାରଣର ଦାୟିତ୍ୱ ଦେଇ ନୀରବ ରହୁଛି ।

'ବିକାଶ'

—"ସ୍ମିତା ! ମୁଁ କାହାର ହେବି, କମିତି ବଞ୍ଚିବି କହ ! ସତରେ ଶେଖର ମୋତେ ଏତେ ଦଣ୍ଡ ଦେଲେ !" ଅମିତା ଲୁହ ପୋଛିଲା ।

—"ଅମିତା, ତୁ କଲେଜର ଜଣେ ସ୍ୱନାମଧନ୍ୟା ଅଧ୍ୟାପିକା; ତଥାପି ବି ତୋର ପିଲାଳିଆମି ଗଲାନି । ଶେଖର ସହିତ ଏତେଦିନ ମିଶିବାପରେ ତା' ବିଷୟରେ ଶେଷରେ ତୁ ଏପରି ଧାରଣା କଲୁ ? ବିକାଶ ଭଳି ପିଲାର କଥାକୁ କ'ଣ ବିଶ୍ୱାସ କରାଯାଇପାରେ ?"

—"ନାହିଁ ଲୋ ସ୍ମିତା । ମନଟା କାହିଁକି ଅସ୍ଥିର ହୋଇ ଉଠୁଛି ।"

—"ହଉ ହଉ ସେସବୁ ଛାଡ଼ । ହଁ କ'ଣ ପରା କହୁଥିଲୁ ଯୁବୋତ୍ସବରେ କେବେ ତୋର କଣ୍ଠକଣ୍ଠର ରେକର୍ଡ଼ିଂ ଅଛି, ମୋତେ ନେବୁଟି ସଙ୍ଗରେ ।" ଦୁହେଁ ହସିଲେ ।

ପ୍ରାଣନାଥ କଲେଜର ବାର୍ଷିକ ଉତ୍ସବ । ଆନନ୍ଦ ମୁହୂର୍ତ୍ତରେ ଏଇ ଉତ୍ସବରେ ଅଧ୍ୟାପିକା ଅମିତା ଦେବୀଙ୍କୁ ଅନୁରୋଧ କରାଗଲା ସଙ୍ଗୀତ ପରିବେଷଣ କରିବାକୁ । ତାନପୁରାର ମୃଦୁ ଝଙ୍କାର ତାଳେତାଳେ ଅମିତାର ସାଙ୍ଗୀତଣୀ କଣ୍ଠରୁ ଭାସି ଆସିଲା, "ଅସରା ଆଶାର ପସରା ଧରି ମୁଁ ତୁମକୁ ଚାହିଁଛି, ଏସବୁ ପଥରେ ଚାଲି ଚାଲି କେତେ ତୁମକୁ ଖୋଜିଛି ।" ଘନଘନ କରତାଳି ଭିତରେ ଉତ୍ସବର ଯବନିକା ପତନ ହେଲା । ସମସ୍ତ ରାତି ୧୧ଟା । ସମସ୍ତଙ୍କ ପରି ଅମିତାବ ବାହାରିଲା ତା' ବସା ଅଭିମୁଖେ ।

ପ୍ରିନ୍‌ସିପାଲ କହିଲେ, "ମିସ୍ ରାୟ ଆପଣ ସ୍କୁଲରେ କେତେଜଣ ପିଲାଙ୍କୁ ନଅନ୍ତୁ । ରାତି ଅନେକ ହେଲାଣି, କେତେବେଳେ କେଉଁ କଥା । "ଅମିତା କହିଲା, "ନାଇଁ ସାର୍ ପିଲାମାନେ ବ୍ୟସ୍ତ ହେଲେଣି ଘରକୁ ଯିବାପାଇଁ । ତା' ପରେ ଏଇ ଆମ୍ବତୋଟା ପରେ ପରେ ତ ମୋ ବସା ପଡ଼ିବ । ପିଲାମାନଙ୍କୁ କାହିଁକି କଷ୍ଟ ଦେବ ? ଆପଣଙ୍କ ଆଶୀର୍ବାଦରୁ ମୋ'ର କିଛି ହେବନି ।

ପ୍ରିନ୍‌ସିପାଲ ଡଃ କେ. ଏସ୍. ଦେବେନ୍ଦ୍ର ନାୟକ ସନ୍ତାନ । ସେ ଅମିତାକୁ ଝିଅଭଳି ଖୁବ୍ ଶ୍ରଦ୍ଧା କରନ୍ତି । ଅମିତା ଏକା ଗଲାପରେ ସେ ବ୍ୟସ୍ତତା ଅନୁଭବ କଲେ । ପିଲାଟା ଏକା ଏକା ଏତେ ରାତିରେ ଗଲା । ସମୟଟା ବଡ଼ ଗୋଳମାଳିଆ । ମଝିରେ ଆମ୍ବତୋଟାଟା । ଓଃ !

ଆମ୍ବ ତୋଟାର ଶେଷରେ ରାସ୍ତା ଦୁଇଭାଗ ହୋଇ ଯାଇଛି, ଗୋଟିଏ ଭାଗ ଲମ୍ବି ଯାଇଛି ସହରକୁ ଏବଂ ଅପର ଭାଗଟି ମିଶିଛି ଜାତୀୟ ରାଜପଥରେ । ସହରକୁ ଯାଇଥିବା ରାସ୍ତାରେ କିଛିବାଟ ଗଲେ ଅମିତାର ବସାଘର । ହଠାତ୍ ଶବ୍ଦଟିଏ ଶୁଣି ଅଟକି ଗଲା ଅମିତା, ଯେତେବେଳକୁ ସେ ଆମ୍ବତୋଟା ଅତିକ୍ରମ କରି ପାରି ନଥିଲା । ସୁରଆଡ଼ ଶ୍ମଶାନ୍ । ତା ସାମ୍ନାରେ ଛିଡ଼ା ହୋଇଗଲା ବିକାଶ ରାୟ ଯମଦୂତ ଭଳି, ତା' ସାଥିରେ ଆଉ ଦୁଇଜଣ ଗୁଣ୍ଡା । "ଜାଣ ଅମିତା, ତୁମକୁ ଅନେକ ବୁଝେଇ ବୁଝେଇ ହାରିଗଲା ହେଲାପରେ ଆଜି ମୋର ଏ ପଦକ୍ଷେପ । ତୁମର ପରିଣାମ ସଂପର୍କରେ ତୁମେ ଏବେ ବେଶ୍ ବୁଝିପାରୁଥିବ । ଘିଅ ତ ଆଉ ସିଧା ଆଙ୍ଗୁଠିରେ ବାହାରେନି । ଆଙ୍ଗୁଠିକୁ ଟିକିଏ ବଙ୍କେଇ ଦେଲେ ଏଁ କ'ଣ କହୁଛ ? ହଉ ତୁମ ସାଥିରେ ଗପିବାକୁ ବେଳନାହିଁ" କହିଲା ବିକାଶ । ସେମାନେ ଅମିତାର ମୁହଁରେ ଲୁଗା ବାନ୍ଧିବାକୁ ଉପକ୍ରମ କଲାବେଳେ ପଛପଟୁ ୧୦।୧୨ ଜଣ ଯୁବକ ସେମାନଙ୍କ ଉପରକୁ କୁଦି ପଡ଼ିଲେ । ଏ ପରିସ୍ଥିତି ପାଇଁ ବିକାଶ ରାୟ ପ୍ରସ୍ତୁତ ନଥିଲା । "ଅମିତା ଏ ତ ଆରମ୍ଭ ମାତ୍ର ତୁମକୁ ମୋ ଅଙ୍କଶାୟିନୀ ନ କରିବାଯାଏ ମୁଁ ନିଶ୍ଚିନ୍ତ ହୋଇ ପାରିବିନି"—ଏତିକି କହି ବିକାଶ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା ।

ଥରି ଉଠିଥିଲା ଅମିତାର ସର୍ବାଙ୍ଗ । ପାଟିରୁ ବାକ୍ୟ ସ୍ଫୁରୁ ନ ଥିଲା ।

ପିଲାମାନେ କହିଲେ, "ମାଡ଼ାମ୍ ! ଏ ବଦମାସ ଜଣେ କଣ୍ଟ୍ରାକ୍ଟର । ଏଠି ସ୍କୁଲଘରର ଅନେକ ସମୟରେ ଆମେ ତାକୁ ଦେଖିଛୁ । ଆପଣ ଆସିଲା ପରେ ପ୍ରିନ୍‌ସିପାଲ ପୁଣି ଆମକୁ ପଠାଇଲେ । ଆମେ ଆସି ନ ଥିଲେ ଆପଣଙ୍କ ଅବସ୍ଥା ସେ କ'ଣ ହୋଇଥା'ନ୍ତା ?"

ଆଇ. ଏ. ଏସ୍ ଫାଇନାଲ୍ର ଫଳ ପ୍ରକାଶ ପାଇଛି । ଏଥର ଶେଖର ଚୌଧୁରୀ ଓଡ଼ିଶାରୁ ଆଇ. ଏ ଏସ୍ ପାଇଥିବା ବ୍ୟକ୍ତିଙ୍କ ମଧ୍ୟରେ ପ୍ରଥମ । ସକାଳୁ ସ୍ନାନ ମାର୍ଜଣା ସାରି ଦେଇ ଅମିତା ଖବର କାଗଜରେ ଆଖି ପକାଇଲା । ଏଇ ଖବର ଉପରେ ଆଖି ପଡ଼ିଲା ମାତ୍ରେ ତା'ର ଆନନ୍ଦର ସୀମା ରହିଲାନି । ନୂଆ ନୂଆ ଲାଗୁଛି ଅମିତାକୁ । ଏ ପୃଥିବୀ ତା' ଆଗରେ ଏକ ନୂଆ ରୂପରେ ପ୍ରତିଭାତ ଯେପରି । କେଜାଣି କାହିଁକି ସେ ଭୁଲି ଯାଉଛି ନିଜକୁ ।

ଅନେକ ବାଧାବିଘ୍ନ, ଅନେକ ଯନ୍ତ୍ରଣା, ଲାଞ୍ଛନା, ଅବମାନନା ସତ୍ତ୍ୱେ ବି ଅମିତା ହସୁଛି ମନ ଖୋଲି ହସ । ନୂତନ ପରିପାଟୀରେ ନିଜକୁ ସଜେଇ ଦେଲା ସେ । ଏକ ପରୀ ରାଇଜର ରାଜକନ୍ୟା ବେଶରେ ଯେପରି ପ୍ରତୀକ୍ଷମାଣା ସେ କେଉଁ ଏକ ଅଜଣା ରାଇଜର ରାଜକୁମାରଙ୍କ ପାଇଁ । ଘର ଭିତରକୁ ପଶି ଆସିଲା ସ୍ମିତା ହସି ହସି ।

—"ଆରେ ସ୍ୱେ କି ବେଶ ଆଜି ଦେଖିଲି ଏ ନେତ୍ର । ଇଏ ସେ ଦିନର କଲେଜ କୁଇନ୍ ନୁହନ୍ତି ତ ?"

—"ତୁ ବଡ଼ ଦୁଷ୍ଟ । ହୁଁ ଆଜି ଏତେ ସକାଳୁ ସକାଳୁ କ'ଣ ପାଇଁ ଚାଲି ଆସିଲୁ ଯେ ।"

"ଯାଉ ଯାଉ ବାଟ ଭୁଲି ଏଣେ ପଳାଇ ଆସିଲି । ତେବେ ଯଦି ଆସିଛି ସହଜରେ ଫେରି ଯିବାଟା ଭଲ ହେବନି । ହଁ କହୁନୁ ଟି ଏ ବେଶ ଆଜି କ'ଣ ପାଇଁ ?"

"ଏ ବେଶ କ'ଣ ଆଜି ନୂଆ ବୋଲି ଭାବୁଛୁ ?"

"ନୂଆ ନୁହେଁ ତ ଆଉ କ'ଣ ? ଖାଲି ତ ନୂଆ ନୁହେଁ, ମନ ଲୋଭ ବି । ମୁଁ ଭାବୁଛି, ମୁଁ ଯଦି ପୁରୁଷଟିଏ ହୋଇଥା'ନ୍ତି ତୋ'ରି ଦୁଆରେ ଦିନରାତି ଅଧିଆ ପଡ଼ନ୍ତି ।"

"ଛାଡ଼ ସେ ବାଜେ କଥା ସବୁ । ସକାଳୁ ସକାଳୁ କିଛି କାମ ପାଇଲୁନି, ଆସିଲୁ ଥଟ୍ଟେଇ ହେବାକୁ ।"

"ହଁ ଥଟ୍ଟେଇ ହେବାକୁ ଆସିଲି । ଅମି, ମୁଁ ଜାଣେ ଆଜି ଏ ବେଶ କାହିଁକି । ଏତେବେଳେ ଯାହା କହନା କାହିଁକି, ଏଇ ବେଶରେ ତୋତେ ଦେଖିଲେ

ମୋ ପ୍ରାଣ ଦୁଃଖରେ ଜଳିଯାଏ । ଭଗବାନ ତୋତେ ଏତେ ସୁନ୍ଦର କରି ଗଢ଼ିଛନ୍ତି କ'ଣ ଏମିତ ଷଡ଼ଯନ୍ତ୍ର କରିବା ପାଇଁ ?"

ଏ ବେଳ ଯାହା ପାଇଁ ସେ ଆଜି ଅନେକ ଦୂରରେ । ଅନେକ ଆନନ୍ଦ, ଆଡମ୍ବରେ ଫାଟି ପଡ଼ୁଥିବେ ସେ । ଆଗାମୀ ଦିନର ସୁନେଲି ସ୍ୱପ୍ନରେ ଅଧୀର ହୋଇ ପଡୁଥିବେ । ଭାରତ ପ୍ରଶାସନର ଅଗ୍ରଦୂତ ସେ । କେତେ ସୁନ୍ଦରୀ ଧନୀ ଲଳନା ତାଙ୍କ ପାଇଁ ଏବେ ଠାରୁ ମାଳା ଗୁନ୍ଥିବା ଆରମ୍ଭ କରି ଦେବେଣି ହୁଏତ ।

ହେଲେ ଏ ଅଭିଶପ୍ତା ଉର୍ବଶୀ ? ଦୁହିଁଙ୍କ ଆଖିରେ ଲୁହ । ଅମିତା ଆଖିରୁ ଲୁହ ପୋଛି ଦେଇ ସ୍ମିତା ପୁଣି କହିଲା, "ଛି ତୁ କାନ୍ଦୁଛୁ ! ଆଜି ଭଲ ଦିନରେ ତୋ' ଆଖିରେ ଲୁହ ଶୋଭା ପାଏନି । ତୋ'ର ଏ ବେଳ ମଙ୍ଗଳ ଘଡ଼ି ଲୋ । ମୋ'ର ବିଶ୍ୱାସ ଏ ପୁଷ୍ପ ଠିକ୍ ଦେବ ପୂଜାରେ ଲାଗିବ । ଶେଖରକୁ ମୁଁ ଭଲ କରି ଜାଣେ । ତା' ପ୍ରାଣରେ ତୋ' ପାଇଁ ଅନେକ ଆକର୍ଷଣ ।"

—"ସ୍ମିତା, ସତେ କ'ଣ ମୋ' ଭାଗ୍ୟ ଆକାଶରେ କୁଆ ତାରା ଉଇଁବ ? ଯେଉଁ କୋମଳ ବୃକ୍ଷର ମୁକୁର ମୁଁ ନିଜ ହାତରେ ଛିଡ଼ାଇ ଦେଇଛି, ସେ ବୃକ୍ଷ ଯେ ଅନେକ ଶାଖାରେ ବିଭକ୍ତ ହୋଇ ନଥିବ ଏ କଥା କିଏ କହିବ ?"

"ଅନେକ ସମୟରେ କେତେକ ବୃକ୍ଷ ତାଙ୍କର ଧର୍ମ ପାଳନ କରିଥା'ନ୍ତି ।"

—"ସ୍ମିତା !"

—"ତୁ କ'ଣ ପାଇଁ ଏତେ ବ୍ୟସ୍ତ ହେଉଛୁ ମୁଁ ବୁଝି ପାରୁନି ।"

—"ତୁ ତ ମୋ'ର ଭଲ ମନ୍ଦ ସୁଖ ଦୁଃଖର ସାଥି । ମୋ ଜୀବନ କାହାଣୀ ତୋ' ମନରେ ଲେଖିବାକୁ । ମୋ' ଜୀବନର ଅବଶିଷ୍ଟାଂଶ କିପରି କଟିବ ଭାବି ପାରୁନି । ଏ ଯେଉଁ ବିପଦ ଉପରେ ବିପଦ ତା'ର ମୁକାବିଲା ମୁଁ କିପରି କରିବ କହିଲୁ । ବିକାଶ ରାସ୍ତ ଛାଇ ପରି ମୋ' ପଛେ ପଛେ ଲାଗି ରହିଛି । ସୁଯୋଗ ପାଇଲେ ସେ ମୋ'ର ଯେ ସର୍ବନାଶ କରି ନଦେବ ଏ କଥା କିଏ କହିବ ? ଭଗବାନଙ୍କର ମୁଁ କି ଅପରାଧ କରିଥିଲି କେଜାଣି ଏତେ ଦଣ୍ଡ ଭୋଗୁଛି ।

ରୁଦ୍ଧ ପ୍ରକୋଷ୍ଠ । କାଠ ଚେୟାରଟିରେ ଆଉଜି ବସିଛି ଶେଖର । ଭାରାକ୍ରାନ୍ତ ମନ ଅଉ ହୃଦୟ । ଆଇ. ଏ. ଏସ. ପାଇବାରେ ତା'ର ସାଥୀମାନେ ଯେତିକି ଖୁସି

ସେ କିନ୍ତୁ ସେତିକି ଖୁସି ହୋଇ ପାରୁନି । ଆଜି କାହିଁକି ଅମିତା କଥା ତା'ର ବେଶି ବେଶି ମନେ ପଡ଼ୁଛି । "ଅମିତା କେଡ଼େ ସୁନ୍ଦର ଆଉ ସରଳ । ଝିଅମାନେ ଏତେ ସରଳ ଥାଇ ପାରନ୍ତି କାହିଁ ମୁଁ ତ ଜାଣେନି । ମୋ'ର ଏ କୃତକାର୍ଯ୍ୟ ପାଇଁ ସେ ଆଜି କେତେ ଖୁସି ହେଉଥାନ୍ତା । ଆଜି ପୁଣି କଟକ ଚଣ୍ଡୀଙ୍କ ମନ୍ଦିରରୁ ଭୋଗ କରି ଆଣି ମୋତେ ଦେଉଥାନ୍ତା, କହି ଯାଉଥାନ୍ତା ଦୁନିଆଁ ଯାକର ଶ୍ରେଷ୍ଠ ବଡ଼ କଥା. ପୃଥିବୀର ଏ ପ୍ରାନ୍ତରୁ ସେ ପ୍ରାନ୍ତଯାଏ ।

ପୁରୁଣା ଡାଏରୀ ଖୋଲାଇଲା ଶେଖର । ଅମିତା ସାଥିରେ କଟାଇ ଥିବା କେତୋଟି ବର୍ଷର ସ୍ନେହିଲ ମୁହୂର୍ତ୍ତିଗୁଡ଼ିକ ଏଇ ଶ୍ରେଷ୍ଠ ଖାତାଟିରେ ଲିପିବଦ୍ଧ । ଏ ସବୁ ଯେପରି ଅସ୍ତବ୍ୟସ୍ତ କରି ପକାଉଥିଲେ ଶେଖରକୁ । ଅମିତାର ନୀରବ ପ୍ରେରଣା ତାକୁ ଏତେବଡ଼ ହେବାରେ ସାହାଯ୍ୟ କରିଛି । ପ୍ରତି ବଦଳରେ ସେ ତାକୁ ଦେଇଛି କ'ଣ ?

ସେଦିନ ଅମିତା ପ୍ରତି ତା' ମନ ଅଭିମାନରେ ଭରି ଯାଇଥିଲା, ଯେଉଁଦିନ ଅମିତା ତାକୁ ଭୁଲିଯିବା ପାଇଁ କହିଲା । ସତରେ ଏଥିରେ ତା'ର ବା ଭୁଲ କେଉଁଠି ? ବିକାଶ ଗ୍ରସ୍ତ ଏକ ଦୁଷ୍ଟ ବ୍ରଣ, ତା'ର ଲୋଲୁପ ଦୃଷ୍ଟି ଯେ କେଡ଼େ ଭୟଙ୍କର ଅମି ସେ କଥା ଜାଣେ । ସେଇଥି ପାଇଁ ସେଦିନ ସେ ଲୋତକ ଭିଜା ନୟନରେ ଏକଥା କହିଥିଲା । ହେଲେ ତା' ମନ ! ତା' ମନ କ'ଣ ଏ କଥା ଗ୍ରହି ଥିଲା ?

ତା'ର ମନେ ଅଛି, ଯେଉଁଦିନ ସେ ଏମ୍. ଏସ୍. ସି. ପଢ଼ିବା ପାଇଁ ଦିଲ୍ଲୀ ଆସିଲା ସେ ଦିନ କଟକ ଷ୍ଟେସନରେ ଅମିତା ତାକୁ ବିଦାୟ ଦେବା ପାଇଁ ଆସିଥିଲା । ବିଦାୟ ବାରତା ଛଳରେ ସେ ଦେଇଥିଲା ଅନେକ ଉପାଦେୟ ଉପଦେଶ ।

ସତରେ ଝିଅମାନେ ପୁଅମାନଙ୍କଠାରୁ ଅନେକ ବୁଦ୍ଧିମତୀ, ନଚେତ୍ ଅମିତା ମୋତେ ଉପଦେଶ ଦିଅନ୍ତା କିପରି ? "ଏ ! ଦେହ ପା' ପ୍ରତି ଯତ୍ନ ନେବ, ଠିକ୍ ସମୟରେ ଖିଆପିଆ କରିବ । ଏଣେତେଣେ ବେଶି ବୁଲାବୁଲି କରିବନି, ଅନ୍ୟଥା ଗୁଡ଼ାଏ ପିଲାଙ୍କ ସହିତ ସମ୍ପର୍କ ରଖିବନି । ମୋ' କଥା ମନେ ପକାଇ ମନ ଦୁଃଖ କରିବନି ।" ଅମିତା କହି ଯାଉଥିଲା ଗୋଟି ଗୋଟି କରି ସେ ଦିନ । ହସିଲା ଶେଖର । ସେ ଏତେ କଥା କିପରି ଜାଣିଲା ? ତା' କଥା ନ ମାନିଥିଲେ ମୋ'ର କି କ୍ଷତି ହୋଇଥାନ୍ତା ?

ସତରେ ମୋ'ର ଅନେକ କ୍ଷତି ହୋଇଥାନ୍ତା ।

ସେ ଦିନ ତା' ଆଖିରେ ଲୁହ ଦେଖିଥିଲି । ଟ୍ରେନ ଛାଡ଼ିଲା । ସେ ଲୋତକ ଭରା ଆଖିରେ ହସି ହସି ହାତ ହଲାଇ ମୋତେ ବିଦାୟ ଦେଇଥିଲା । ସେଇ କୋମଳ, ସନ୍ତୁଷ୍ଟ ନିରୀହ ନୟନ ଦୁଇଟିକୁ ମୁଁ ଏବେବି ଭୁଲି ପାରିନି ।

ମୁଁ ଏବେ ଅନେକ ଯୋଜନ ଦୂରରେ, ହେଲେ ମୋତେ ଲାଗୁଛି ମୁଁ ଯେପରି ତା' ହୃଦୟ କାରାଗାରରେ ବନ୍ଦ ହୋଇ ରହି ଯାଇଛି ସବୁଦିନ ପାଇଁ । ହାତ ଘଡ଼ିକୁ ଗୁହାଁଲା ଶେଖର, ରାତି ୧୧ଟା ହେଲାଣି । ବାକ୍ସରୁ ଆଲ୍‌ବମ୍ ବାହାର କରି ଅମିତାର ଫଟୋଟିକୁ ଦେଖିବାକୁ ଲାଗିଲା ସେ । ପାନପତ୍ର ପରି ଗୋଲ ହସିଲା ମୁହଁ, ଲମ୍ବ କୃଷ୍ଣ କଜ୍ଜ୍ୱଳ ନୟନ, ଓଠରେ କଳା ଜାଇ, ମଥାରେ ସରୁ ଟୋପାଟିଏ, ନିତମ୍ବ ଲମ୍ବିତ କେଶ । ସତରେ ଭଗବାନଙ୍କର ଏକ ସଫଳ ସୃଷ୍ଟି ଏଇ ଅମିତା । ଚମ୍ପା ଫୁଲିଆ ଦେହକୁ ଶାଗୁଆ ଶାଢ଼ୀ ଖୁବ୍ ମାନେ ତାକୁ । ଅମିତାର ଏଇ ବେଶ ଭାରି ଭଲ ଲାଗେ ଶେଖରକୁ । ତେଣୁ ଅନେକ ଅନୁରୋଧ ପରେ ଅମିତା ସେଇ ବେଶରେ ରଙ୍ଗୀନ ଫଟୋଟିଏ ତୋଳି ଶେଖରକୁ ଦେଇଛି । ତାକୁ ଦି' ଧାଡ଼ି ଲେଖିବା ପାଇଁ ଶେଖର କାଗଜ କଲମ ଧରିଲା । ହେଲେ ପର ମୁହୂର୍ତ୍ତରେ ମନ ତା'ର ନରମି ଗଲା । ଏ ଯାଏ ଅମିତା ପାଖକୁ ଯେତେ ଚିଠି ସେ ଲେଖିଛି, କୌଣସିଟି ଅମିତା ମନରେ ରେଖାପାତ କରିପାରିନି । ତେଣୁ ପ୍ରତି ଚିଠିର ଫେରନ୍ତା ତାକକୁ ଗୁହାଁ ଗୁହାଁ ସେ ନିରାଶ ହୋଇଛି । ଏବେ ଚିଠି ଲେଖିଲେ ବି ସେଇଆ ହେବ । ଆଖି ତାର ଛଳଛଳେଇ ଗଲା । ଅମି ଏତେ ନିଷ୍ଠୁର ହୋଇଗଲା କେମିତି । କମିତି ଭୁଲିଗଲା କମ୍ପିଦନ୍ତୀ ଭରା ଅତୀତକୁ କାଲି ମୁଁ ଟ୍ରେନ୍‌ରେ ଯାଉଛି । ଶେଷ ଥର ପାଇଁ ଅମିକୁ ଦି' ଧାଡ଼ି ଲେଖିଲେ କ୍ଷତି କ'ଣ ?

ଅମି,

ଶୁଭେଚ୍ଛା ନେବ । ମୋର ଚାକିରୀରେ ରହଣି କାଳ ମଧ୍ୟରେ ତୁମକୁ ମୁଁ ଅନେକ ଚିଠି ଲେଖିଛି । ମୋ'ର ପ୍ରତ୍ୟେକ ଚିଠି ତୁମ ପାଖକୁ କିଛି ନା କିଛି ନୂଆ ଆଶା ବହନ କରି ନେଇଥାଏ । ଏ ଦୁନିଆରେ ମୋ'ର ନିଜର ହୋଇ କେହି ନଥିଲେ ବି ତୁମ ପରିବାରକୁ ମୁଁ ଅତି ନିଜର ବୋଲି ଭାବିଥିଲି । ସେଇଥି ପାଇଁ ସବୁ ଚିଠିରେ ମୁଁ ତୁମ ଠାରୁ ପ୍ରେରଣା, ଉତ୍ସାହ, ଉଦ୍ଦୀପନା ଆଶା କରି ଆସୁଛି । ହେଲେ ମୋ'ର ସବୁ ଚିଠି ତୁମ ପାଖରେ ନିରର୍ଥକ । ସ୍ନେହ କାଙ୍ଗାଳ ଏଇ ମଣିଷଟିର ମନକୁ ବୁଝିବା ପାଇଁ ସତରେ ଏ ଦୁନିଆରେ କେହି ନାହିଁ । ତୁମକୁ ମୁଁ କିଛି ମାଗିନି, କେବେବି ମାଗିବିନି । ହେଲେ ତୁମ ଭଲ ମନ୍ଦ ସମ୍ପର୍କରେ ମୋତେ ଦି' ଧାଡ଼ି ଲେଖିଥିଲେ କ'ଣ କିଛି କ୍ଷତି ହୋଇଥାନ୍ତା ?

ଆଜି ମୁଁ ଆଇ. ଏ ଏସ୍. ଟ୍ରେନିଂ ଯାଉଛି । ଠିକଣାଟି ଲେଖୁଛି । ଏହା ପରେ ତୁମଠାରୁ ଯଦି ଶୁଭେଚ୍ଛା ନ ପାଏ ତେବେ ମୁଁ ଭାବିବି ଯେ ମୋ'ଠାରୁ ତୁମେ ତୁମର ଶ୍ରଦ୍ଧା ପ୍ରତ୍ୟାହାର କରି ନେଇଛ । ଭଲରେ ଥାଅ, ରହୁଛି ।

"ଶେଖର"

ନୀରବ ବିକାରଗ୍ରସ୍ତ ରଜନୀ । ଚନ୍ଦ୍ର ମଣ୍ଡଳ ଗଳିଗଲାଣି ଅନେକବେଳୁ । କଳା ପରଦା ତଳେ ପୃଥିବୀ ବକ୍ଷ ଶୀତଳ ପଡ଼ି ଆସିଲାଣି । ନଗ୍ନଛିଆ ବୃଦା ଜହ୍ନାଡ଼ରେ ଚକୋଷି କାନ୍ଦୁଥିବ ରହି ରହି । ମଶାଣିରେ ଶୃଗାଳଗଣ କେଳି ରଚନା କରୁଥିବେ ହୁଏତ । ଦ୍ୱି ସଜଡୁଣିଙ୍କ କଳି ଅମିୟିବଣି କେତେବେଳୁ ।

କଣ୍ଟ୍ରାକ୍ଟର ବିକାଶଗସ୍ତ ମନରେ ଅନେକ ଦ୍ୱନ୍ଦ୍ୱ, ଯେ କୌଣସି ମତେ ତାକୁ ଆଜି ଘରେ ପହଞ୍ଚିବାକୁ ହେବ । ହଠାତ୍ ଅଜଣା ଚଢ଼େଇଟିଏ ମୁଣ୍ଡ ଉପର ଦେଇ ଫୁର୍ କିନା ଉଡ଼ିଗଲା । ଚମକି ପଡ଼ିଲା ବିକାଶ ଗସ୍ତ । ରାତି ୧୨ଟାରୁ କମ୍ ହେବନି ଏଇ ୧୨ଟା ରାତି ପାଇଁ ତା' ମନରେ ଦ୍ୱିଧା ନାହିଁ । ଏହା ଠାରୁ ଢେର ଅଧିକ ରାତିରେ ସେ ଘରକୁ ଫେରିଛି । ହେଲେ ଏ ରାତି ତାକୁ କେମିତି ଅଲଗା ଅଲଗା ଜଣା ପଡ଼ୁଛି । ପାଖରେ ତିନି ଲକ୍ଷ ଟଙ୍କା । ଆଜି କାଲିର ପରିସ୍ଥିତି ନେଇ ଯାହା ହେଲେ ବି ତାକୁ ଘରେ ପହଞ୍ଚିବାକୁ ହେବ । ମଟର ସାଇକେଲର ଗତି ଟିକିଏ ବଢ଼େଇ ଦେଲା ବିକାଶ ଗସ୍ତ । ନିର୍ଜନ ରାଜପଥ ଖୁବ୍ ପରିଷ୍କାର ।

ହଠାତ୍ ରାସ୍ତାର ମୋଡ଼ ଅତିକ୍ରମ କରୁ କରୁ ବୁଲେଟ ମଟର ସାଇକେଲ ଏକ ବଡ଼ କାଠ ଗଣ୍ଡିରେ ବାଡ଼େଇ ହୋଇ ଓଲଟି ପଡ଼ିଲା । ବିକାଶ ଗସ୍ତର ଚେତା ହଜିଗଲା । ସଙ୍ଗେ ସଙ୍ଗେ କଳା ପୋଷାକ ଧାରୀ ୪।୫ ଜଣ ଯୁବକ ଉଣ୍ଡୁଲା ଉଣ୍ଡୁଳି କରି ଟଙ୍କା ଅଳାଟି ଧରି କେଉଁଆଡ଼େ ଅଦୃଶ୍ୟ ହୋଇଗଲେ ।

ଠିକ୍ ବିପରୀତ ପାର୍ଶ୍ୱରୁ ଜିପ୍‌ରେ ଆସୁଥାନ୍ତି ଶେଖର ଚୌଧୁରୀ, କେନ୍ଦ୍ରାପଡ଼ାର ଏସ୍. ଡି. ଓ. । କିଛି ଦୂରରୁ ସେ ମଟର ସାଇକେଲର ଆକ୍‌ସିଡ଼େଣ୍ଟ ଦେଖି ପାରିଥିଲେ । ପାଖରେ ପହଞ୍ଚି ସେ ନିଜ ଆଖିକୁ ବିଶ୍ୱାସ କରିପାରୁ ନଥିଲେ । ବିକାଶ ଗସ୍ତ ଘରି ପିଲାର ଆଜି ଏ ଅବସ୍ଥା । ଅଧିକ ଚିନ୍ତା ନ କରି ସେ ସଙ୍ଗେ ସଙ୍ଗେ ତାର ଚେତାହୀନ ଶରୀରଟି ଜିପ୍‌ରେ ଧରି ପୁଣି ଫେରିଲେ କଟକ ଏସ. ସି. ବି. ମେଡ଼ିକାଲ ଅଭିମୁଖେ ।

ବଚନ ଏ ସଂସାର ଆଉ ବିଚନ ଏଇ ସାମାଜିକ ମଣିଷର ପ୍ରକୃତ । ଏତେ ବଡ଼ ଏଇ ଦୁନିଆରେ କେତୋଟି ମୁହୂର୍ତ୍ତ ବତେଇ ଦେଲେ ଜୀବନର ପରିସମାପ୍ତି ବେଳ ଆସିଯାଏ । ତଥାପି ଏଇ ସ୍ୱଳ୍ପ ସମୟ ଭିତରେ ମଣିଷ କେତେ ଘଟଣ ଅଘଟଣ ଘଟାଇଥାଏ । ଦୁର୍ବଳ ଉପରେ ସବଳର ଅତ୍ୟାଚାର ଏକ ଗ୍ରହଣ ଯୋଗ୍ୟ ତତ୍ତ୍ୱ । ହେଲେ ଦୁର୍ବଳକୁ ପରାଭୂତ କରି ସବଳ ନିଜକୁହିଁ କେବଳ ସନ୍ତୁଷ୍ଟ କରିଥାଏ । ଏ ଦୁନିଆକୁ ସେ କି ଶିକ୍ଷା ଦିଏ ? ଶତ୍ରୁ ସହିତ ମିତ୍ରତା ଏକ ମହତ୍ତ୍ୱ ଗୁଣ । ଯେ ଶତ୍ରୁର ଉପକାର କରି ପାରିଛି ସେ ଦୁନିଆକୁ ବଶ କରି ପାରିଛି ।

ବିକାଶ ରାୟର ଆଖିରେ ଲୁହ । ଶେଖର ଚୌଧୁରୀ ତା'ର ପଡ଼ା ସାର୍ଥୀ । ସେ ଶେଖର ପ୍ରତି ଶତ୍ରୁତା କରି ଆସିଛି, ହେଲେ ତା'ର ଏ ଦୁର୍ଦ୍ଦିନରେ ସେ ତାକୁ ଯେପରି ସାହାଯ୍ୟ କଲା ତା' ଜନ୍ମ ଜନ୍ମାନ୍ତରେ ସେ ସେ ଋଣ ପରିଶୋଧ କରି ପାରିବନି । ସେ କ୍ରମେ ଶକ୍ତିହୀନ ହୋଇ ପଡ଼ୁଛି, ଶ୍ରେଷ୍ଠ ହୋଇ ଯାଉଛି ଶେଖର ପାଖରେ ।

ନିଜ କୋଠରୀରେ ଶୋଇ ରହି କେତେ କଥା ଭାବି ଯାଉଥିଲା ବିକାଶ ରାୟ । ଆଜି ତା'ର ଏ ଯେଉଁ ଦୁର୍ଘଟଣା ଘଟିଲା ସେଥିପାଇଁ ସେ ନିଜ ଭାଗ୍ୟ ବ୍ୟତୀତ ଦୋଷ ଦେବ କାହାକୁ ? ତା'ର ଏ ଦୁର୍ଗତି ପାଇଁ ସେ ନିଜେ କ'ଣ ଷୋଳ ଅଣା ଦାୟୀ ନୁହେଁ ? ସେଇ ଅଶୁଭ ଦିନର ପ୍ରତ୍ୟେକ ମୁହୂର୍ତ୍ତ ତା'ର ମନେ ହିଁ ରହିବ । ଗର୍ବ, ଅହଂକାର ଏ ଦୁଇ ସହଚରୀ ତା'ର ଏ ଅବସ୍ଥା ପାଇଁ ଦାୟୀ । ସେଇ ରାତିରେ ଫେରିବା ପାଇଁ ତା'ର ଅନ୍ତରଙ୍ଗ ବନ୍ଧୁ ଚତୁର ଆଉ ଲଛମନ ତାକୁ ସେଦିନ ବାଧ କରିଥିଲେ । ହୁଏତ ବାଟରେ ବଡ଼ ବଡ଼ କାଠ ଗଡ଼ ରଖିବା ତାଙ୍କରି କାମ ହୋଇପାରେ । ଶେଷରେ ମୋରି ଅସ୍ତ୍ର ବୁମେରାଙ୍ଗ ହୋଇ ମୋ'ରି ପାଖକୁ ଫେରିଲା । ଯାହାକୁ ମୁଁ ଭାବୁଥିଲି ଅତି ନିଜର ସେମାନେ ହେଲେ ମୋ'ର ଧ୍ୱଂସର କାରଣ ଆଉ ଯାହାର ମୁଁ ଅନିଷ୍ଟ ଚିନ୍ତା କରି ଆସୁଛି ତା'ରି ହାତରେ ରହିଲା ମୋ ଜୀବନ ।

ଆଜି ସଂଧ୍ୟାରେ ମୁଁ ମେଡ଼ିକାଲରୁ ଘରକୁ ଆସିଲି । ଶେଖର ଆସିଥିଲା । ଆଜି କେମିତି ସେ ମୋତେ ନୂଆ ନୂଆ ଜଣା ପଡୁଥିଲା । ସେଇ ଶାନ୍ତ, ସୁନ୍ଦର ସ୍ୱଭାବ, ପରକୁ ଆପଣାର କରି ନେବାର କି ସମ୍ମୋହନ ମୂର୍ତ୍ତି । ଦିନ ଥିଲା ଯେତେବେଳେ ତା'ର ଏଇ ସବୁ ଗୁଣ ମୋତେ ବଡ଼ ଅସ୍ୱାଭାବିକ ବୋଧ ହେଉଥିଲା । ଏହାର ପ୍ରଭାବ ଯେ ସୁଦୂର ପ୍ରସାରି ମୁଁ ତାହା ଉପଲବ୍ଧି କରି ପାରି ନ ଥିଲି । ଆଜି ମଥା ମୋ'ର ଧୀରେ ନଇଁ ଯାଉଛି ସେଇ ଶାନ୍ତ, ସୁନ୍ଦର ମୂର୍ତ୍ତି ପାଖରେ ।

ସୁଦୂର କେନ୍ଦ୍ରାପଡ଼ାରୁ ଆସି ସେ ମୋତେ ରାତି ସାରା ଜଗି ବସିଛୁ, ସେ ମୋତେ ବଞ୍ଚାଇଛ । ସେ ମଣିଷ ନୁହେଁ, ଦେବତା, ମୋତେ ମାର୍ଜନା କରିଛୁ, ମୋ' ଭୁଲ ପାଇଁ ପ୍ରାୟଶ୍ଚିତ କରିବାର ସୁଯୋଗ ସେ ମୋତେ ଦେଇଛୁ । ଆଜ ମେଡ଼ିକାଲରୁ ଫେରିଲା ବେଳେ ହସି ହସି କହିଲା "ବିକାଶ ' ଈଶ୍ୱର ତୁମକୁ ସୁଖରେ ରଖନ୍ତୁ ।" ସତରେ କେତେ ମହାନ୍ ଏଇ ମଣିଷଟି । ଧନ୍ୟ ସେଇ ପିତାମାତା ଶେଖରର ।

ଅମିତା ! ସତରେ ତୁମେ ଭାଗ୍ୟବତୀ । ଶେଖରର ପରି ମଣିଷଟିକୁ ଯେ ନିଜର କରି ପାରିଛ ତା' ଠୁ ଭାଗ୍ୟବତୀ ଆଉ କିଏ ହୋଇପାରେ ? ମୁଁ ସମାଜର କଳଙ୍କ । ତୁମର ଏ ଅବସ୍ଥା ପାଇଁ ମୁଁ ଦାୟୀ । ମୋ'ର ଏ ଅପକୀର୍ତ୍ତି ପାଇଁ ମୁଁ ଆଜ ଅନୁତପ୍ତ । ଅନୁତାପର ନିଆଁରେ ଜଳି ଜଳି ନିଃଶେଷ ହୋଇଗଲେ ମୁଁ ପାଇବ ଶାନ୍ତି । ମୁଁ ତୁମଠାରୁ କ୍ଷମା ଚାହେଁ । ତୁମର ମହତ ଗୁଣରେ ମୋତେ କ୍ଷମା ଦେବନି ? ମୋ'ର ବିଶ୍ୱାସ ତୁମେ ନିଶ୍ଚୟ ଦୁର୍ଦ୍ଦିନକୁ ପଛରେ ପକାଇ ମୋ'ର ଶ୍ରେଷ୍ଠ ଅନୁରୋଧ ରଖିବ । ଲୁହ ଦୁଇଟୋପା ଗଡ଼ି ଆସିଲା ବିକାଶ ଆଖିରୁ ।

ଆଜ ମହାବିଷୁବ ସଂକ୍ରାନ୍ତି ଅମିତାର ଜନ୍ମ ଦିନ । ବୋଉ ଚିଠି ଲେଖିଥିଲା ଘରକୁ ଯିବା ପାଇଁ । ତା'ର ଅନେକ କାମ ଅଛି । ସେ ଯାଇ ପାରିବନି ଜଣାଇ ବୋଉକୁ ଚିଠି ଲେଖିଛି । ଚିଠି ପାଇ ବୋଉ ଅନେକ ମନ ଦୁଃଖ କରିଥିବ ।

ପ୍ରତିବର୍ଷ ଏଇଦିନ ଅରୁଣା ଦେବୀ ଅମିତାକୁ ପାଖରେ ପାଇବାକୁ ବ୍ୟାକୁଳ ହୋଇ ପଡ଼ନ୍ତି । ଅମିତା ତାଙ୍କର ଜୀବନ ସମ୍ବଳ, ସେଇ ପୁଅ ସେଇ ଝିଅ । ତା' ଲାଗି ତାଙ୍କର ଜୀବନ । ଯେତେବେଳେ ଅମିତା ଖୋର୍ଦ୍ଧା ପ୍ରାଣନାଥ କଲେଜରେ ଆପଏଣ୍ଟମେଣ୍ଟ ଲେଟର ପାଇଲା ସେତେବେଳେ ବାପା ଅନେକ ଖୁସି ହେଲେ, କିନ୍ତୁ ଖୁସି ହୋଇ ନ ଥିଲେ ଅରୁଣା ଦେବୀ । ଝିଅକୁ ପାଖରୁ ଅନ୍ତର କରିବାକୁ ତାଙ୍କର ଇଚ୍ଛା ନ ଥିଲା । ସେଥିପାଇଁ ସେ ଯୁକ୍ତି କରିଥିଲେ, "ଝିଅଟି କ'ଣ ରୋଜଗାର କରିବ ? ଶିକ୍ଷିତା ହେଲା, ସେତିକି କ'ଣ ଯଥେଷ୍ଟ ନୁହେଁ ?" ହେଲେ ଏ ଯୁକ୍ତିକୁ ବାପା ରାମବାବୁ ଗ୍ରହଣ କରି ନଥିଲେ । ଅମିତା ପ୍ରାଣନାଥ କଲେଜରେ ଗଣିତ ଅଧ୍ୟାପିକା ଭାବରେ ଯୋଗ ଦେଲା । ଯେଉଁଦିନ ସେ ଖୋର୍ଦ୍ଧା ଆସିଲା ସେଦିନ ବୋଉ ଅରୁଣା ଦେବୀ କହିଥିଲେ ପ୍ରତି ରବିବାର ଏବଂ ଛୁଟିଦିନ ମାନଙ୍କରେ ଘରକୁ ଯିବା ପାଇଁ । ପ୍ରତି ମହାବିଷୁବ ସଂକ୍ରାନ୍ତିରେ ଘରେ ତା'ର ଉପସ୍ଥିତି ନିହାତି ଜରୁରୀ ।

ବୋଉର ଡାଇରେକ୍ଟ୍ ଅନୁଯାୟୀ ପ୍ରଥମ କେତେ ମାସ ଅମିତା ଠିକ୍ ଠିକ୍ ପ୍ରତି ରବିବାର ଆଉ ଛୁଟିଦିନ ମାନଙ୍କରେ ଘରକୁ ଯାଉଥିଲା ; ଏବେ ତାହା କ୍ରମେ

କ୍ରମେ ବନ୍ଦ ହୋଇ ଗଲଣି । କିନ୍ତୁ ଏତ ମନ୍ତ୍ରାବ୍ଧ ଏକାନ୍ତରେ ସେ ଘରକୁ ଯିବାକୁ ବାଧ୍ୟ । ଯାହା ହେଉନା କାହିଁକି ସେଦିନ ବୋଉ ପିଠାପଣା ତିଆରି କରି ନିଜ ହାତରେ ତାକୁ ଖୋଇ ଦେବ । ଏଥିରେ ତା'ର କେତେ ଯେ ଆନନ୍ଦ ! ଏଥର ସେ ଘରକୁ ଯିବନି ବୋଲି ବୋଉକୁ ଲେଖିଛି, ବୋଉ ମନ ଦୁଃଖ କରିଥିବ ନିଶ୍ଚୟ ।

ପ୍ରତିବର୍ଷର କୋଳାହଳମୟ ଏଇ ଦିନଟି ଏ ବର୍ଷ ଅନେକ ଶୁଷ୍କ ଜଣା ପଡୁଛି ଅମିତାକୁ । କାଳବୈଶାଖୀର ତାଣ୍ଡବଲୀଳା ତା' ପ୍ରାଣରୁ ସବୁ ସରସତା କାଢ଼ିନେଇଛି । ଅତୀତକୁ ମନେ ପକାଇ ତା' ନରମ ଆଖିରୁ ଲୁହ ଦି' ଟୋପା ଗଡ଼ି ପଡ଼ିଲା । ହାକଡ଼ାକ ଘର ଭିତରକୁ ପଶି ଆସିଲା ସ୍ମିତା । ହାତରେ ଖଣ୍ଡେ ନୂଆ ଶାଢ଼ୀ, କିଛି ମିଠା ଆଉ ଫଳ । ହସି ହସି ତା' ଆଗରେ ଥୋଇ ଦେଲା ସେ ।

—"ଏ ଅମି. ଏଇ ବଦ ଅଭ୍ୟାସ ତୁ ଛାଡ଼ିଲୁନି । କାହିଁକି ସବୁବେଳେ କାନ୍ଦୁଛୁ ଶୁଣେ ? କାନ୍ଦି କାନ୍ଦି ଆଖିରୁ ଲୁହ ଶେଷ କରି ଦେଲେ ବି କିଛି ଲାଭ ପାଇବୁ ? ଆଜି ତୋ'ର ଜନ୍ମଦିନ, ଘରେ ଥିଲେ କେତେ ଖୁସି କରିଥା'ନ୍ତୁ । କ'ଣ ପାଇଁ ମାଉସୀଙ୍କୁ ମନାକରି ଚିଠି ଲେଖିଦେଲୁ ଯେ ? ନେ ଏ ଶାଢ଼ୀ ପିନ୍ଧିଦେ, ମନ୍ଦିର ଯିବା । ଏ ଜୀବନ ଅଳ୍ପକ । ଯେତିକି ସମୟ ବଞ୍ଚିବା, ସେଇ ସମୟତକ ଖୁସିରେ ନ ବିତାଇବା କାହିଁକି ?"

—"ସ୍ମିତା ! ତୁ ତ ମୋ' ଅନ୍ତରର ଭିତର ଆଉ ବାହାର । କିପରି ତୋତେ ବୁଝାଇବି ? ଆଜି ଭଳି ଦିନଟିରେ ମୋ' ଅପେକ୍ଷା ଶେଖର ଅନେକ ଖୁସି ହେଉଥାନ୍ତେ । ସବୁ ପାଇ ହଜେଇ ଦେଲାପରେ ମନର ଅବସ୍ଥା ଯାହା ହୁଏ ତାହା କି ଭାଷାରେ ତୋତେ ବୁଝାଇବି ?

ବିକାଶ ବସୁ ହଠାତ୍ ପଶି ଆସିଲେ ଘର ଭିତରକୁ । ହାତରେ ତାର ଦାମୀ ଫୁଲ ତୋଡ଼ା । ବିକାଶକୁ ଦେଖି ଅମିତା ଚିତ୍କାର କରି ଉଠିଲା, "ମୋତେ ବଞ୍ଚାଇଦିଅ, ମୋତେ ବଞ୍ଚାଅ ।" ଶାନ୍ତ କଣ୍ଠରେ କହିଲା ବିକାଶ, "ବ୍ୟସ୍ତ ହୁଅନ୍ତୁନି ଅମିତା ଦେବୀ । ମୁଁ ଆଜି ଆସିନି ଆପଣଙ୍କର ସର୍ବନାଶ କରିବାକୁ । ମୁଁ ଆସିଛି ମୋ'ର କୁକର୍ମର ପ୍ରାୟଶ୍ଚିତ କରିବାକୁ । ଆପଣ ଅନ୍ତତଃ ମୋତେ ଏଇ ସୁଯୋଗରୁ ବଞ୍ଚିତ କରନ୍ତୁନି ।" ନିଜକୁ ସାହସ ସଞ୍ଚୟ କରି କହିଲା ସ୍ମିତା, "ପୁଣି ଆଜି କି ନାଟକ ସୃଷ୍ଟି କରିବା ପାଇଁ ଧାଇଁ ଆସିଛନ୍ତି ଏଠିକି ? କ'ଣ ପାଇଁ ଆପଣ ଛୁଆ ପରି ଲାଗି ରହିଛନ୍ତି ତା' ପଛେ ପଛେ ? ଏ ଦୁନିଆଁରେ ତାକୁ ଟିକିଏ ବଞ୍ଚିବାକୁ ଦିଅନ୍ତୁ । ତା'ଠାରୁ କ'ଣ ନେବାପାଇଁ ଆଜି ଧାଇଁ ଆସିଛନ୍ତି ?

—"ମୁଁ ଅସିନି କିଛି ନେବାପାଇଁ । ମୁଁ ଆଜି ଆସିଛି ଅମିତା ଦେବୀଙ୍କ ଠାରୁ କିଛି କୃତଜ୍ଞତା ଆଶାରେ ।"

—"ବେଶ୍ ଚତୁର ଆପଣ । ଭଦ୍ରତାର ଖୋଳପା ଭିତରେ ଆପଣ ବେଶ୍ ଖେଳ ଖେଳି ପାରନ୍ତି । ସମ୍ମାନ ରକ୍ଷା କରି ଆପଣ ଚାଲିଯାନ୍ତୁ, ନଚେତ୍ ଆମକୁ ପୋଲିସର ଆଶ୍ରୟ ନେବାକୁ ହେବ "

—"ଏତେ କଷ୍ଟ ଆପଣଙ୍କୁ କରିବାକୁ ହେବନି ମିତା ଦେବୀ । ମୁଁ ଯେମିତି ଆସିଛି ସେମିତି ଚାଲିଯିବି । ଯିବା ପୂର୍ବରୁ ଅନ୍ତତଃ ଆପଣମାନେ ମୋ' ଅନୁରୋଧ ଟିକିଏ ରଖିବେ । ମୁଁ କଂଟ୍ରାକ୍ଟର ବିକାଶ ରାୟ ନୁହଁ, ମୁଁ ଆପଣମାନଙ୍କ ବନ୍ଧୁ ବିକାଶ ରାୟ ।"

କୋଧ ସମ୍ଭାଳି ନପାରି ଅମିତା କହିଲା, "କିଏ କହିଲା ଆପଣ ବନ୍ଧୁ ? ଆପଣ ପ୍ରତାରକ; ପ୍ରବଞ୍ଚକ; ନାରୀ ରକ୍ତଲୋଭୀ ପାଷାଣ୍ଡ । ବିଶ୍ୱାସ କରାଯାଇ ପାରେନା ଆପଣଙ୍କୁ । ଜଙ୍ଗଲର ବ୍ୟାଘ୍ର, ସିଂହଠାରୁ ଆପଣ ହିଂସ୍ର ।"

—"ମୋତେ ଶେଷଥର ପାଇଁ ଟିକିଏ ବୁଝିବାକୁ ଚେଷ୍ଟା କରନ୍ତୁ ଅମିତା ଦେବୀ । ମୁଁ ଆପଣଙ୍କ ପାଖକୁ ଆସିନି ଶତ୍ରୁର ଖୋଳପା ପିନ୍ଧି ମୁଁ ଆସିଛି ଏକ ନୂଆ ରୂପରେ ମୂନର୍ଜନ୍ମ ନେଇ । ଧୈର୍ଯ୍ୟ ଧରି ମୋ କଥା ଟିକିଏ ଶୁଣନ୍ତୁ ସବୁ ବୁଝି ପାରିବେ । ଶେଖର ଚୌଧୁରୀ ଆଇ. ଏ. ଏସ୍. ବର୍ତ୍ତମାନ କେନ୍ଦ୍ରାପଡ଼ାର ଏସ୍ ଡ଼ି ଓ. । ବାସ୍ତବରେ ସେ ଜଣେ ଦେବତା । ଆପଣଙ୍କୁ ପାଇବାର ମୋହ ମୋତେ ଏତେ ଅଂଧ କରି ଦେଇଥିଲା ଯେ ମୁ ଭାବିଥିଲି ତାକୁ ଶେଷ କରିଦେଲେ ଆପଣଙ୍କୁ ପାଇବା ସହଜ ହେବ । ସେଇଥିପାଇଁ କଲି, ହେଲେ ଠାକୁରଙ୍କ ବିଚାର ବିଚିତ୍ର । ଦୁନିଆଁକୁ ଯେ ଆଲୋକ ଦେଖାଇବ ମୋ' ପରି ଜଣେ ଅଧମ ହାତରେ ସେ ବା କାହିଁକି ନିଃଶେଷ ହୁଅନ୍ତା ।

"ଦିନେ ମୁଁ ଡକାୟତଙ୍କ କବଳରେ ପଡ଼ିଲି । ନିଶ୍ଚିତ ମୃତ୍ୟୁ ମୁଖରୁ ଶେଖର ଚୌଧୁରୀ ମୋତେ ଉଦ୍ଧାର କରିଛନ୍ତି । ସେ ମୋ'ର ତ୍ରାଣକର୍ତ୍ତା । ମୋ'ର ପ୍ରାଣ ଦେଲେ ବି ତା' ଋଣ ପରିଶୋଧ କରି ପାରିବିନି । ସେ ଦେବତା । ଦେବତାଙ୍କ ପାଇଁ ଦେବୀଙ୍କର ସୃଷ୍ଟି । ଆପଣଙ୍କର ସୃଷ୍ଟି ତା'ରି ପାଇଁ । ଆପଣଙ୍କ କଥା ଦିନ ଆଜି ଜାଣିଥିଲି । ସେଇଥିପାଇଁ ଧାଇଁ ଆସିଛି ଆପଣଙ୍କଠାରୁ କ୍ଷମା ନେବା ପାଇଁ ।"

—"ବିକାଶ ବାବୁ !"

—ଅତୀତର ସମସ୍ତ ଦୁର୍ଯ୍ୟୋଗକୁ ଭୁଲିଯାନ୍ତୁ । ମୋତେ ଗାଳି ବୋଲି ଥରେ ଡାକନ୍ତୁ । ସେଇ ହେବ ଆପଣଙ୍କର ମୋ' ପାଇଁ ଦୟା ।

ଏଇ କେତେଦିନ ହେବ ଅମିତା ଅସୁସ୍ଥ । ମନର ଅବସ୍ଥା ଭଲ ରହୁନି । ସେ ଏବେ କିଛିଦିନ ଛୁଟିରେ ଅଛି । ସକାଳେ ସ୍ମିତା ଆସିଥିଲା । କ'ଣ ଏଣୁତେଣୁ ଗୁଡ଼ାଏ ଔଷଧ, କିଛି ଫଳ ରଖି ଦେଇ ଯାଇଛି । ତାଗିଦ୍ କରି ଯାଇଛି ଔଷଧ ଯେପରି ଠିକ୍ ସମୟରେ ଖିଆଯାଏ । ହସିଲି ଅମିତା । ପାଗଳୀଟା ଏଇ ସ୍ମିତା । ମୋ' ପାଇଁ କେତେ ବ୍ୟସ୍ତ, ଖିଆପିଆ ଭୁଲିଯାଉଛି । ପୂର୍ବଜନ୍ମରେ ସେ ମୋର ଅତି ଆପଣାର ଥିଲା, ଏ ଜନ୍ମରେ ସିନା ଆମେ ଅଲଗା ହୋଇ ଯାଇଛୁ । ହେଲେ ତା' ମନ ଭିତରେ କେଉଁଠି ଟିକିଏ ହେଲେ ବି କୃତ୍ରିମତା ନାହିଁ ।

ତୁମେ ଏତେ ନିଷ୍ଠୁର ହୋଇଗଲ ଶେଖର । କେବେ କ'ଣ ମୁଁ ତୁମର ମନେ ପଡ଼େନି ? ମୁଁ ଜାଣେ ତୁମେ ବଡ଼ ଅଭିମାନୀ । ସେଦିନ ଚିଠିଟିଏ ଲେଖିଥିଲି ବୋଲି ସେଥିଲାଗି ଭଳି କରି ତୁମେ ମୋ'ଠାରୁ ଦୂରେଇ ଗଲ । ପୁରୁଷ ତୁମେ, ନାରୀ ମନର ଆବେଗ ତୁମେ କୁଆଡୁ ବୁଝିବ ? କାଳର ଅନ୍ତର ତଳର ବ୍ୟଥା, ତା' ମନର କୋମଳତା ଅଳି କିପରି ବୁଝିବ ?

ଅତୀତରେ ଅତୀତର ସେଇ ଝିଲ୍ ମିଲ୍ ଦିନଗୁଡ଼ିକ କେତେ ସୁନ୍ଦର ଥିଲା । ତୁମେ ମୋ' କଣ୍ଠରୁ ଗୀତ ପଦେ ଶୁଣିବାକୁ କେତେ ମିନତି କରୁଥିଲ । ତୁମର ସେଇ ମିନତି ମୋତେ ଗୀତ ବୋଲିବାର ପ୍ରେରଣା ଦେଉଥିଲା । ନର୍ତ୍ତକୀର ତାନପୁରା ଉପରେ ଆଙ୍ଗୁଠି ଚାଳନା କରିବା ପାଇଁ ଶକ୍ତି ଯୋଗାଉଥିଲା । ଏବେ ଅନେକ ଅନୁରୋଧ ସତ୍ତ୍ୱେ ବି ମୋ' କଣ୍ଠରେ ସେଦିନର ରାଗିଣୀ ଆଉ କେବେ ଆସେନି । ଅନେକ ପୁରସ୍କାର ପାଇଲେ ବି ତାହା ତୁମ ଓଠର ଧାରେ ହସ ଠାରୁ କୌଣସି ଗୁଣରେ ବଡ଼ ହୋଇ ପାରେନି । ଅନେକ ମୋତେ ତାରିଫ୍ କରି ନାନା ବିଶେଷଣ ଦେଇ ଅନେକ ଢଙ୍ଗରେ ଡାକିଲେ ବି ତୁମର 'ଅମି' ଡାକ ଠାରୁ ତାହା ସେତେ ମଧୁର ହୋଇ ପାରେନି । ମୋ' କଣ୍ଠରୁ ଗୀତ ପଦେ ଶୁଣିବାକୁ ତୁମର କ'ଣ କେବେ ଇଚ୍ଛା ହୁଏନି ? ମୋ'ର ଆଜି ସବୁ ଥାଇ ବି ମୁଁ କିଛି ନୁହେଁ । ମୋତେ ଲାଗୁଛି ମୁଁ ଯେପରି ସାହାରାର ଧୂସର ବାଲି ସିଣ୍ଡ ଉପରେ କିଛି ଅମୂଲ୍ୟ ସଂପଦ ହଜେଇ ଦେଇଛି । କିନ୍ତୁ ମାତ୍ର ସେ ଯେ ଅମୂଲ୍ୟ ସଂପଦର

କ'ଣ ? ତୁମେ କହି ପାରବନି । କାହିଁକି ଜାଣ ? ଏ ଯାଏ ବି ତୁମର ସେ ଅଭିଜ୍ଞତା ହୋଇନି ।

ମୁଁ ଆଜି ଅସୁସ୍ଥ, ଅସୁସ୍ଥ କେବଳ ତୁମର ପାଇଁ । ଥରେ ଆସି ଦେଖିଯାଅ, ତୁମ 'ଅମି' ଆଜି ସେଇ ବେଶରେ, ଯେଉଁ ବେଶରେ ତୁମେ ତାକୁ ଦେଖିବାକୁ ଜିଦ୍ ଧରି ବସୁଥିଲ । ମୁଁ ଯେ ଆଉ ସୁସ୍ଥ ହେବି ସେ ଭରସା ମୋ'ର ନାହିଁ । ସତରେ, ଏ ପୋଡ଼ା ଜୀବନରେ ଆଉ ବା ପ୍ରୟୋଜନ କ'ଣ ?

ଫଗୁଣର ମନ୍ଥ ମନ୍ଥର ଗତି ସଞ୍ଜ । ନୀଡ଼ବାହୁଡ଼ା ପକ୍ଷୀମାନେ ଫେରି ଆସିଲେଣି, ଗୋଠ ବାହୁଡ଼ା ଗୋରୁପଲ ବାହୁଡ଼ିଲେଣି । କୁନି ପିଲାଟି ଖେଳ ସାରି ମା' କାନି ଧରି ଅଝଟ କଲାଣି । ତୁଳସୀ ଚଉରା ପାଖରେ ସନ୍ଧ୍ୟାବତୀ ଜଳି ସରିଲାଣି । ମାଛି ଅନ୍ଧାରରେ କଅଁଳ ପତ୍ର ଲୁଚି ଗଲାଣି । ବୃକ୍ଷ ଶାଖାର ପ୍ରତି ଛନ୍ଦେ ଛନ୍ଦେ ଅନ୍ଧାର ଭରିଗଲାଣି ।

ଅମିତା ବିଛଣାରେ ପଡ଼ି ଛଟପଟ ହେଉଛି । ମୁଣ୍ଡ ଭିତରେ ଅନେକ ଦୁଶ୍ଚିନ୍ତାର ବୋଝ । ଅଳ୍ପ ଦିନ ତଳେ ବାପା ଆସିଥିଲେ । ସେ ଦେଖିଛି ବାପାଙ୍କ ମୁହଁରୁ ସରସତା ଯେପରି ଲୋପ ପାଇଯାଇଛି । ଝିଅର ଭଲମନ୍ଦ ସମ୍ପର୍କରେ ଚିନ୍ତାଏ ବୃଦ୍ଧି ବାମା ଫେରି ଯାଇଛନ୍ତି ।

ବାପାଙ୍କ କରୁଣ ମୁହଁକୁ ଦେଖିଲେ ଏବେ କାହିଁକି କେଜାଣି ଅମିତାର ପ୍ରାଣ ଥରିଉଠେ । ସଦା ପ୍ରଫୁଲ୍ଲ ବାପାଙ୍କର ମୁହଁ ଏବେ ଅମିତାକୁ ଅଲଗା ଅଲଗା ଜଣା ପଡ଼ୁଛି । ଅତି ଶ୍ରେଷ୍ଠ ଶ୍ରେଷ୍ଠ କଥାରୁ ଝିଅ ବାହାର କରି ବାପା ଖୁସିରେ କେତେ କଥା ଗପି ଯା'ନ୍ତି । କିନ୍ତୁ ଏବେ ସେ ସବୁ ପାସୁ କମି ଯାଇଛି । ତାଙ୍କ କଥାର ପ୍ରଗଳ୍ଭତା ଆଉ ନାହିଁ । ବାମା ନାରୀ ସ୍ୱାଧୀନତାକୁ ବେଶୀ ପସନ୍ଦ କରନ୍ତି । ନାରୀ ଜାତିର ଅବମାନନା ସେ ସହି ପାରନ୍ତିନି । ନାରୀ ଶିକ୍ଷାର ପ୍ରସାର ସପକ୍ଷରେ ସେ ସବୁବେଳେ କହନ୍ତି । ତାଙ୍କ ମତରେ ଗୋଟିଏ ଝିଅ ଶିକ୍ଷିତା ହେଲେ ଗୋଟିଏ ପରିବାର ଶିକ୍ଷିତ ହେଲା ବୋଲି ଜାଣିବ । ସେଇଥି ପାଇଁ ଅମିତାର ପାଠପଢ଼ା ଉପରେ ସେ ବେଶି ଗୁରୁତ୍ୱ ଦେଉଥିଲେ । କେତେବେଳେ କେମିତି ତା' ପାଠପଢ଼ା ସଂପର୍କରେ କୋଉ କଥା କହିଲେ ବାପା ତାକୁ ଉଦାହରଣ ଦେଇ ଅନେକ ବୁଝାନ୍ତି । ଏବେ ବାପାଙ୍କର ଏ ନୀରବ ଯନ୍ତ୍ରଣା କେବଳ ତା'ରି ପାଇଁ । ତାଙ୍କର ଶୁଖିଲା ମୁହଁ ଦେଖିଲେ ଅମିତା ମନେମନେ ଅନେକ କାନ୍ଦେ । ବିଛଣା ଉପରେ ଅବଶ ଶରୀରକୁ ଟେକିଦେଇ ଦେଇ ଆକାଶ ପାତାଳ କେତେ କଥା ଭାବି ଯାଉଥିଲା ଅମିତା ।

ସ୍ମିତା ଟା ଏଯାଏ ଆସିଲାନ । ଏତେବଡ଼ ଘରଟା ଏକୁଟିଆ ଝାଁ ଝାଁ ଲାଗୁଛି । ସ୍ମିତାଟାକୁ କେତେଥର କହିଲଣି ଏଠିକୁ ଚାଲି ଆସିବାକୁ, ସେ କ'ଣ ମୋ' କଥା ଶୁଣୁଛି ? ଖାଲି କହୁଛି, "ଏତେ ବ୍ୟସ୍ତ କାହିଁକି ହେଉଛୁ ଯେ, ଆଉ କେଇଟି ଦିନ ପରେ ତୋ' ବନ୍ଧୁ ଆସିବେ, ସେତେବେଳେ ମୁଁ କୁଆଡ଼େ ଯିବି ?" ହୁଁ ହୁଁ ପାଗଳୀଟାଏ, କେତେବେଳେ ସେ କ'ଣ କହେ । ମୋ'ର ପୁଣି ବନ୍ଧୁ ଆସିବେ ! କିଏ ମୋ'ର ବନ୍ଧୁ ?

ଅମିତା ବିଛଣାରୁ ଉଠି ଲାଇଟ ଜାଳିଲା, ଧୂପ ବତିଟିଏ ଲଗାଇ ଠାକୁରଙ୍କୁ ମୁଣ୍ଡିଆ ମାରିଲା । ତଥାପି ବି ସ୍ମିତାର ଦେଖା ନାହିଁ । ତାନ୍‌ପୁରାଟି କାଢ଼ି ସରୁ ତାରଗୁଡ଼ିକୁ ଛୁଇଁଗଲା ଅମିତା ।

ଏଇ ତାନ୍‌ପୁରାଟି ତା'ର ଅସମୟର ସାର୍ଥୀ । ଏହାକୁ ଶେଖର ଅନେକ ଶ୍ରଦ୍ଧା କରନ୍ତି । ଏଇଟିକୁ କିଣିଲାବେଳେ ଅମିତା ଶେଖରକୁ ସଙ୍ଗରେ ନେଇ ବଜାର ଯାଇଥିଲା । ଆହୁରି ଅନେକ ତାନ୍‌ପୁରା ଭିତରୁ ସେ ଏହାକୁ ପସନ୍ଦ କରିଥିଲେ । ତେଣୁ ଏହାକୁ ଅଧିକ ଦାମ୍ ଦେଇ ସେ କିଣିଥିଲା । ଶେଖର ଯେତେବେଳେ ତାଙ୍କ ଘରକୁ ଆସେ ସେ ପ୍ରଥମେ ଏଇ ଯନ୍ତ୍ରଟିରେ ଟିକିଏ ଆଙ୍ଗୁଠି ଚାଳନା କରେ, ହସି ହସି କହିପକାଏ, "ଧେତ୍ ମୋ, ଭଲ ମୂର୍ଖ ସ୍ତ୍ରୀ' ଠାରୁ କ'ଣ ପାଇବ ? ତୁମର ଚମ୍ପାକଢ଼ି ପରି ଆଙ୍ଗୁଠି ବିନା ଏହାର ମର୍ମ ବୁଝିବ ।"

ଅନେକ ଭାବନା ଅମିତାର ସ୍ୱର ସଂଯୋଜନାକୁ ଗୋଳମାଳିଆ କରି ଦେଉଥିଲା ।

—"ମହାମାନ୍ୟା ସାମ୍ରାଜ୍ଞୀ, ଭିତରକୁ ଆସିପାରେ କି !" କହିଲା ସ୍ମିତା ହସି ହସି ।

—"ତୁ ବଡ଼ ଦୁଷ୍ଟ ହେଲୁଣି । ଏ ବାଳ ଚପଳତା ତୋ'ର ଏ ଯାଏ ବି ଗଲାନି । ହାତରେ କ'ଣ ? ପଛ ପଟେ ଲୁଚେଇ ଦେଲୁ ଯେ ! ଦେ ଟିକେ ଦେଖିବା ।"

—"କ'ଣ ଦେବି କହ ?"

—"କ'ଣ ମୋ' ପାଖରେ ଅଛି ତୋତେ ଦେବ ? ଦେଖ୍, ଯାହା ଅଛି ନେଇଯା ।"

—"ଉହୁଁ, ତୁ ନଜେ କହ କ'ଣ ଦେବୁ ? ଭଲ ଖବରଟିଏ ତୋ' ପାଇଁ ଆଣିଛୁ । ସଦ୍ୟ ପ୍ରସ୍ଫୁଟିତ ଗୋଲାପ ପରି ସୁରଭି ଭରା ଏଇ ଖବର । କିଛୁ ନ ପାଇଲେ ଖାଲି ଖାଲି ମାଗଣାଟାରେ କିପରି କହିବ ଯେ !"

"ହଉ ହେଲା ତୋତେ ଆଜ ପେଟପୁରା ମିଠା ଖୁଆଇବି ।"

—"ନା ନା, ଏତେ ଶସ୍ତାରେ ମୁଁ ରାଜି ହୋଇଯିବି ବୋଲି ତୁ ଭାବୁଛୁ !"

"ଛେନା ପୋଡ଼ ଦେବି, ସାଢ଼ୀ ଭେଟ ଦେବି, ସିନେମା ଦେଖାଇ ନେବି । ଆଉ କ'ଣ ?"

—"ନାହିଁ ନାହିଁ ନାହିଁ ଏସବୁ କ'ଣ ମୋତେ ଅଭାବ ହେବ ?"

--"ତେବେ କହ ତୋ'ର ଅଭାବ କ'ଣ ? ପୂରଣ କରିବାକୁ ଚେଷ୍ଟା କରିବି ।"

—"ମୋ'ର ଅଭାବ ଏଇ କଥାଟା । ଅମିତା ଗାଲରେ ଚିମୁଟିଏ ଦେଇ ହସି ହସି ଗଡ଼ିଗଲା ସିଂଗ୍ଧା ।"

—"ତୋ' ଦୁଷ୍ଟାମିକୁ ଆଉ ପାରି ହେବନି ଦେଖୁଛି । କି ଅପୂର୍ବ ଖବର ଆଣିଛୁ, କହିବୁଟି ?"

--"ତୁ ଆଜି କାହିଁକି ଛୁଟି ନେଲୁ ଯେ ? କ'ଣ ହେଲା ? ଦେହ ଭଲ ନାହିଁ, ନା ଆଉ କିଛି ?

"କ'ଣ କହି ତୋତେ ବୁଝେଇବି । ତୋତେ କେଉଁ କଥା ଅଜଣା ଯେ ମୋତେ ପୁଣି ଆଜି ଏ ନୂଆ ପ୍ରଶ୍ନ ।"

—"ଆଚ୍ଛା ହେଉ, ପେପର ଦେଖିଲୁ, ପଞ୍ଚମ ପୃଷ୍ଠାର ଚତୁର୍ଥ ସ୍ତମ୍ଭରେ କ'ଣ ବାହାରିଛି । "ଆଇ. ଏ ଏସ୍. ଅଫିସରଙ୍କ ନ୍ୟୁୟର୍କ ଯାତ୍ରା ।" ଶ୍ରୀ ଶେଖର ଚୌଧୁରୀ ଆଇ ଏ. ଏସ୍. । ଓଡ଼ିଶା ସରକାରଙ୍କ ସୁପାରିସ୍ କ୍ରମେ ଭାରତ ସରକାରଙ୍କ ଦ୍ୱାରା ମନୋନୀତ ହୋଇ ନ୍ୟୁୟର୍କ ଅଭିମୁଖେ ଯାତ୍ରା କରୁଛନ୍ତି । ସେଠାରେ ଏକ ବର୍ଷ ରହଣି କାଳ ମଧ୍ୟରେ ସେ ସେଠାକାର ପ୍ରଶାସନିକ କ୍ଷେତ୍ରରେ

ତଳସ୍ତରରୁ ଉପରସ୍ତର ଯାଏ କିପରି ସମନ୍ୱୟ ରକ୍ଷା କରାଯାଇ ପାରୁଛି ତାହା ଅନୁଷ୍ଠାନ କରିବେ ।" ଆନନ୍ଦରେ ଅମିତାର ଆଖି ଦୁଇଟି ଲୋତକରେ ଭରିଗଲା ।

—"ସ୍ମିତା ! ଠାକୁର କ'ଣ ସତରେ ମୋ' ପ୍ରତି ନିର୍ଦ୍ଦୟ ହେଲେ ? ଆଉ କେତେ କାଳ ଏମିତି ହନ୍ତସନ୍ତରେ ଜୀବନ କାଟିବି ? ସତରେ ମୋ'ର କ'ଣ ପୋଡା କପାଳ ? ମୁଁ କାହିଁକି ଏଥିରେ ପାଦ ଦେଲି ? ଶେଖରଠାରେ କି ସମ୍ମୋହନ ଶକ୍ତି ଥିଲା ଯେ ମୁଁ ତା' ପାଖକୁ ଟାଣି ହୋଇଗଲି ? ଆଗରୁ ତ ମୁଁ ଖୁବ୍ ଭଲରେ ଥିଲି । ଠାକୁର ମୋତେ କାହିଁକି ଏ ବୁଦ୍ଧି ଦେଲେ ? ତୁ ମୋ' ଠାରୁ ଅନେକ ଭଲରେ ଅଛୁ । ବାପା ବୋଉଙ୍କର ଗେହ୍ଲା ଝିଅ ମୁଁ । କେତେ ଆଶା ସେମାନଙ୍କର ମୋ' ଠାରେ, ହେଲେ ଏ କ'ଣ ସବୁ ହୋଇଗଲା ! ତୁ କହ ମୁଁ ବଞ୍ଚିବି କେମିତି ? ଚିଲଙ୍କ ପରି କାନ୍ଦି ଉଠିଲା ଅମିତା ।"

ସ୍ମିତା କହିଲା, "ଏତେ ଅଧୈର୍ଯ୍ୟ ହେଲେ କ'ଣ ହେବ ? ତୁ ଉଚ୍ଚ ଶିକ୍ଷିତା, ସମାଜ ତୋ' ଠାରୁ ଅନେକ କିଛି ଆଶା କରେ, ଏମିତି ଭାଙ୍ଗି ପଡ଼ିଲେ କ'ଣ ସମସ୍ୟାର ସମାଧାନ ହୋଇଯିବ ? ଧୈର୍ଯ୍ୟ ମାନବର ଏକ ବଡ଼ ଗୁଣ । ତୋ'ର ବ୍ରତ କେବେ ନିଷ୍ଫଳ ହେବନି । ତୋ' କଣ୍ଟକିତ ପଥରେ ଦିନେ ଫୁଲ ଚନ୍ଦନ ବୃଷ୍ଟି ହୋଇ ପଡ଼ିବ । ଶେଖରକୁ ମୁଁ ଭଲ ଭାବରେ ଜାଣେ । ତୋ' ପ୍ରତି ତା' ମନରେ ଅଳ୍ପମାତ୍ର ଦୁର୍ବଳତା । ତାକୁ ସେ ଖୁବ୍ ଚତୁରତାର ସହିତ ଆଡ଼େଇ ଯାଏ । ତୋ' ଜନ୍ମ ଉତ୍ସବରେ ପ୍ରଥମ କରି ସେ ଯେଉଁଦିନ ଯୋଗ ଦେଲା ତୋତେ ନୂଆ ରୂପରେ ଦେଖି ଅଭିଭୂତ ହୋଇ ଯାଇଥିଲା ସେ ।

ସେଦିନ ପାପ୍ପୁ ସବୁ ଅତିଥି ଫେରି ଗଲେ । ତୋ'ର ଅନୁରୋଧରେ ଶେଖର ଆଉ ମୁଁ ରହିଗଲୁ ପଛକୁ । ଆମେ ତିନି ଜଣ ଏକାଠି ଖାଇଲେ । ମୋ'ର ସ୍ପଷ୍ଟ ମନେ ଅଛି, ଶେଖର ଯେପରି ଖାଇବା ଛାଡ଼ି ତୋତେ ବାରମ୍ବାର ନିରୀକ୍ଷଣ କରୁଥିଲା । ମୋତେ ଖୁବ୍ ହସ ଲାଗୁଥିଲେ ବି ସବୁକୁ ଚାପି ଦେଇ ମୁଁ ଖାଇବାରେ ଲାଗିଯାଇଥାଏ, ଆଉ କଣେଇ କଣେଇ ତୋ' ଆଡ଼େ, ଶେଖର ଆଡ଼େ ଚାହୁଁଥାଏ ।

ଝିଅପିଅ ଚାଲି ସରିଲା । ଆମେ ବାହାରିଲୁ ଆମ ବାଟରେ । ଶୁଭରାତ୍ରି କହିଦେଇ ତୁ ବାରଣ୍ଡାରେ ଛିଡ଼ା ହୋଇ ରହିଲୁ । ତୋ'ର ମନ ଅଛି କି ନା' କହି ପାରିବିନି, ସେତେବେଳକୁ ରାତି ପ୍ରାୟ ସାଢ଼େ ଏଗାର ହୋଇ ଯାଇଥାଏ ।

ବାଟରେ ମାଉସୀ ଆଉ ତୁମ ଘର ସମ୍ପର୍କରେ ଶେଖର ଅନେକ ପ୍ରଶଂସା କରି ଯାଉଥାଏ । ହଠାତ୍ କହି ପକାଇଲା, "ଅମିତା ଆଜି ଖୁବ୍ ସୁନ୍ଦର

ବଶୁଥିଲ ନା !" ଏଇ ପ୍ରଶ୍ନକୁ ସେ ବୋଧହୁଏ ଅନେକ ବେଳୁ ଅପେକ୍ଷା କରିଥିଲା । ସଙ୍ଗେ ସଙ୍ଗେ ଔପନ୍ୟାସିକ ଢଙ୍ଗରେ କହିଲା, "ଖୁବ୍ ସୁନ୍ଦର । ସତରେ ଅମିତାର ଅଣାଘ୍ରାତମାଲ୍ୟ ରୂପ ମାଧୁରୀ କେବଳ ମୋ'ର ନୁହେଁ ପ୍ରତି ଯୁବକର ପ୍ରାଣରେ ରେଖାପାତ କରିବ । କିଏ ସେହି ଭାଗ୍ୟବାନ ପୁରୁଷ କେଜାଣି ଯାହା ପାଇଁ ପାରିଜାତର ଏଇ ପୁଷ୍ପ କଳିଟି ସାଇତା ।"

ମୁଁ କହିଲି, "ଯାହା ଜଣାପଡ଼ୁଛି ତୁମେ ବୋଧହୁଏ ଆଜି ରାତିସାରା ଉଜାଗର ରହି ଅମିତାର ପ୍ରତିଛବି ମନେ ମନେ ଆଙ୍କିବ ।"

ତୁ ଅନେକ ଦୁଷ୍ଟ ହେଲୁଣି ସ୍ମିତା । ମୋତେ ପଚାରିଲୁ ସତ କଥା କହିଲାରୁ ଏଇ ମନ୍ତବ୍ୟ । କ୍ରମେ ତା' ମୁହଁ କେମିତି ବିବର୍ଣ୍ଣ ହୋଇ ଆସୁଥିଲା । ଅନୁନୟ କଣ୍ଠରେ ମୋତେ କ'ଣ କହିଲା ଜାଣୁ, "ତୋତେ ମୋ'ର ଅନୁରୋଧ ସ୍ମିତା, ମୁଁ ଏପରି କହିଲି ବୋଲି ଅମିତା ଯେପରି ନ ଜାଣେ, ମୋତେ ଲାଗୁଛି ଏହା କହି ଦେଇ ମୁଁ ଯେପରି ତା' ନିକଟରେ ଛୋଟ ହୋଇ ଯାଉଛି ।"

ସ୍ମିତା ! ସତରେ ତୁ କେତେ ଭଲ । କ'ଣ ଦେଇ ତୋ' ଋଣ ସୁଝିବି ? ଆନନ୍ଦ ଓ ଆବେଗ ଭରା କଣ୍ଠରେ କହିଲା ଅମିତା ।

ହେଉ ଚାଲ୍ ଚାଲ୍ ଆମ ଘରଆଡ଼େ ଯିବା । ପି'ସା କହିଛନ୍ତି ତୋତେ ସାଙ୍ଗରେ ନେବା ପାଇଁ ।

ସ୍ମିତା ଲୋ ! ଏତେ କଷ୍ଟ ଏତେ ଦୁଃଖ ଦେଲା ପରେ ବି ଠାକୁରଙ୍କ ମନର ଅଭିମାନ ମେଣ୍ଟିନି । ବହୁତ ଭଲ ଆହୁରି ଏକ କଠିନ ବିପଦ ମୋ' ପାଇଁ ମାଡ଼ି ଆସୁଛି । ମୁଁ ଜାଣିଛି, ମୋତେ ସେ ଅଚିରେ ଗ୍ରାସ କରିଯିବ । ମୋ'ର ସବୁ ହଜି ଯିବ । ମୁଁ ନିଃଶେଷ ହୋଇଯିବି । ଅମିତା ଦାସକୁ ତୁ ଆଉ ଏ ଜୀବନରେ ଦେଖିବାକୁ ପାଇବୁନି । ଆଖିରୁ ଲୁହ ପୋଛିଲା ଅମିତା ।

"କ'ଣ ଗୁଡ଼େ ଏସବୁ ଭେଣ୍ଡୁ ବକି ଯାଉଛୁ ? ଅଯଥା ଦୁଶ୍ଚିନ୍ତା ମୁଣ୍ଡରେ ପୂରାଇ ତୁ ଯେ କି ଲାଭ ପାଉ ମୁଁ ବୁଝି ପାରେନି । କହିଲା ସ୍ମିତା ।

ମୁଁ ଜାଣେ ତୁ ରାଗିବୁ, ଅନେକ ଗାଳିଦେବୁ । ହେଲେ ତୋତେ ନ କହି ମୁଁ ଆଉ କାହାକୁ କହିବି ? ତୁ ତ ମୋ'ର ସାଥୀ, ତୁ ମୋର ସହଚରୀ, ତୁ ମୋ'ର

ହସ ବାନ୍ଧ ସବୁ । ତୋ’ ଆଗରେ ଦୁଃଖ କହିଲେ ମନଟା ଟିକିଏ ହାଲ୍‌କା ହେବତ !
ଆଜି ବୋଉର ଚିଠି ପାଇଲି, କ’ଣ ଲେଖିଛି ଦେଖ୍ ।

ସ୍ମିତା ଅତି ଆଗ୍ରହରେ ଚିଠି ପଢ଼ି ବସିଲା ।

ଅମି,

ମୋ’ର ସ୍ନେହ ଆଉ ତୋ’ ବାପାଙ୍କର କଲ୍ୟାଣ ନେବୁ । ଜାଣେ ଚିଠିଟି ପଢ଼ିଲେ ତୁ ନିଶ୍ଚୟ ଦୁଃଖ ପାଇବୁ । ହେଲେ କ’ଣ କରିବା ତୁ କହିଲୁ ମା’ ! କେତେ ଗେହ୍ଲାରେ ତୋତେ ବଢ଼ାଇଥିଲି । ତୋ ଆଖିରେ ଲୁହ ଦେଖିବିନି ବୋଲି ଏ ଯାଏ ସବୁବେଳେ ତୋ’ର ଇଚ୍ଛା ପୂରଣ କରି ଆସିଛି ।

ତୁ ଯଦି ମୋ’ର ପୁଅ ହୋଇଥାନ୍ତୁ; ତେବେ କାନରେ ସାତ ଗଣ୍ଠି ପକାଇ ତୋତେ ରଖିଥା’ନ୍ତି । ହେଲେ ତୁତ ଝିଅଟିଏ । ସମାଜର ରୀତି ନିୟମକୁ ମାନି ତୋତେ ମୁଁ ପର ଘରକୁ ପଠାଇବି । ଅନ୍ତର ମୋ’ର ଫାଟି ଯାଉଥିଲେ ବି ତାକୁ ମୁଁ ନୀରବରେ ସହିବାକୁ ବାଧ ହେବି । ଯାହା ଉପରେ ଏତେଦିନ ଧରି ଭରସା ରଖିଥିଲି, ଯାହା ହାତରେ ତୋତେ ସମର୍ପି ଦେଇ ମୁଁ ଟିକିଏ ଆଶ୍ୱସ୍ତ ହୋଇଥା’ନ୍ତି ସେତ ଆଉ ହାତ ପାହାନ୍ତାରେ ନାହିଁ । ବିଦେଶରୁ କେବେ ଫେରିବ ଏବଂ କି ସିଦ୍ଧାନ୍ତ ନେବ ତାହା ଠାକୁରଙ୍କୁ ଜଣା । ତାକୁ କେତେଦିନ ଆଉ ଗୃହେ ବସିଥିବା ?

ସ୍ମୃତା ଭିତରେ ତୋ’ ବାପା ଥରେ କେନ୍ଦ୍ରାପଡ଼ା ଯାଇ ତୋ’ ବଣ୍ଟଘର ପ୍ରସଙ୍ଗରେ ଶେଖର ସହିତ କଥାବାର୍ତ୍ତା ହେଲେ, ସେ କହିଲେ, ‘‘ଏବେ ସେସବୁ କଥାରେ ମୁ ମୁଣ୍ଡ ଖେଳାଇ ନାହିଁ । ଏଇ ନିକଟରେ ମୁଁ ବିଦେଶ ଯାଉଛି, ସେଠୁ ଫେରିଲେ ଯାହା କରିବା କଥା ମୁଁ ଜଣାଇବି ।’’

ତୋର ସାଙ୍ଗର ଝିଅମାନେ ପରେ ଘରକୁ ଯାଇ ଏବେ ପିଲାଛୁଆର ମା’ ହେଲେଣି । ମୁ କ’ଣ ଜୀବନ ସାରା ତୋ’ ଆଖି ଲୁହ ଦେଖୁଥିବି ? ତା’ର କ’ଣ ପରିସମାପ୍ତି ହେବନି ?

ତୋ’ର ମଙ୍ଗଳ ପାଇଁ ବାପା ଭଲ ପ୍ରସ୍ତାବଟିଏ ସ୍ଥିର କରିଛନ୍ତି । ପୁଅ ଇଞ୍ଜିନିୟର, ଆଫ୍ରିକାରେ ରହେ । ନା’ ତାର ଅବିନାଶ ମହାପାତ୍ର । ବାପା ମା’ଙ୍କ ଏକମାତ୍ର ପୁଅ ସେ । ସେଠି ତୋ’ ଦିନ ଗୁଡ଼ିକ ବେଶ୍ ଭଲରେ କଟିବ । ପୁରୁଣା ଖାନ୍‌ଦାନି ବଂଶ ତାଙ୍କର । ଏମିତି ଘରଟିଏ ଭାଗ୍ୟରେ ଥିଲେ ମିଳେ । ତୋ’

ପାଇଁ ବାପା ଅନେକ ବ୍ୟସ୍ତ । ତୋ'ର ଯେ ଶ୍ୱଶୁର ହେବେ ତାଙ୍କ ନାମ ସନାତନ ମହାପାତ୍ର, ଜଣେ ଜମିଦାର କହିଲେ ଅତ୍ୟୁକ୍ତି ହେବନି । ତାଙ୍କୁ ତୋ' ବାପା ଏକ ପ୍ରକାର କଥା ଦେଇ ସାରିଛନ୍ତି । ଆସନ୍ତା ଗୁରୁବାର ଦିନ ଅବନୀଶ ଆସିବେ ତୋତେ ଦେଖିବା ପାଇଁ । ତୋ' ବୋଉର ଅନୁରୋଧ ରଖି ତା'ର ଦୁଇଦିନ ପୂର୍ବରୁ ଆସି ଏଠି ପହଞ୍ଚିବୁ । । ଇତି ।

ତୋ' 'ବୋଉ'

ପଢ଼ିଲୁତ ବୋଉର ଚିଠି ! ଏବେ କହ ମୁଁ କ'ଣ କରିବି ? କାହାର ହେବି ? ? ଏତେ ଦୁଃଖ ମୁଁ କିମିତି ସହିବି ସ୍ମିତା ? କି ଦୁର୍ଯୋଗରେ ଯେ ମୋ'ର ଜନ୍ମ, ବାପା ବୋଉ ମୋ' ପାଇଁ ହନ୍ତସନ୍ତ, ମୁଁ ନିଜେ ବି ହନ୍ତସନ୍ତ । ମୁଁ ପାଗଳୀ ହୋଇଯିବି ସ୍ମିତା । ରକ୍ତ ମାଂସର ଶରୀର ଧାରୀ ମୁଁ ମଣିଷଟିଏ । ସମସ୍ତଙ୍କ ପରି ମୋ'ର ବି ମନଟିଏ ଅଛି । ସେ ମନରେ ସୁନାର ହରିଣୀ ପାଇବାର ମୋହ ଅଛି ଆଉ ସେଇ ମନରେ ଦଶାନନ ଟେରେଇ ନେବାର ଭୟ ବି ଅଛି । ତେବେ ଏଇ ମୋହ ଆଉ ଭୟ ଭିତରୁ ମୁଁ କାହାକୁ ଆଦର କରିବି ?

ରାତି ଅନେକ ହେଲାଣି । ରୁଦ୍ଧ ଦ୍ୱାର ଆର ପଟେ ଆଲୁଅ ଲିଭି ଗଲାଣି । କ୍ରମେ ଘୁମେଇ ପଡ଼ୁଛି ଖୋର୍ଦ୍ଧା ସହର । ଅମିତା ବିଛଣା ଉପରେ ଛଟପଟ ହେଉଛି । ଏଇ ଖୋର୍ଦ୍ଧା ସହର ସହିତ ମୁଁ ପ୍ରାୟ ପାଞ୍ଚ ବର୍ଷ ହେବ ଜଡ଼ିତ । ମୋର ଏଇ ପାଞ୍ଚ ବର୍ଷର ହସ କାନ୍ଦ ଭରା ମୁହୂର୍ତ୍ତଗୁଡ଼ିକୁ ଏଇ ସହର ଅଙ୍ଗେ ଲିଭେଇଛି । କେତେବେଳେ ଏଇ ସହର ବୁକୁ ମୋର ପ୍ରଶଂସାର ଧ୍ୱନିରେ ମୁଖରିତ ହୋଇଛି ତ କେତେବେଳେ ଏଇ ସହରର କଳେବର ମୋର ଦୁର୍ନାମର ପ୍ରାଚୀର ପଥରେ ରୁଦ୍ଧ ହୋଇଯାଇଛି । ତଥାପି ବି-ଏଇ ସହର ମୋତେ କେବେ ଅବଜ୍ଞା କରିନାହିଁ, ଅସମ୍ମାନ କରିନାହିଁ ।

ଆଜି କାହିଁକି ପ୍ରାଣ ଆକୁଳରେ ଥରି ଉଠୁଛି । ଜୀବନ ପ୍ରତି ମୋହ ଧୀରେ ଧୀରେ ତୁଟିଯାଉଛି । ମୁଁ ଆଉ ସହି ପାରୁନି । କେତେଦିନ ଏ ଅଲୋଡ଼ା ଜୀବନକୁ ଏମିତି ଅଯଥାରେ ସାଇତି ରଖିବି ? ପଳାଶ ଫୁଲ ମୁଁ, ଦେବ ଭୋଗ୍ୟା ହେବାର ସୌଭାଗ୍ୟ କେଉଁଠୁ ପାଇବି ? ମୋ' ଜୀବନ ଦୀପ ଅକାଳରେ ଲିଭିଯାଉ, ଏ କ'ଣ ମୋ' ପାଇଁ ମଙ୍ଗଳ ନୁହେଁ ?

ମୋ' ବିଭାଘର ପାଇଁ ବାପା ବୋଉ ଅନେକ ବ୍ୟସ୍ତ, ଅନେକ ଚିନ୍ତିତ । କେତେ ଦିନ ମୁଁ ବା ଆଉ ତାଙ୍କୁ ଭୁଲେଇ ରଖିବି ମୋ' ପାଇଁ କେତେଦିନ ସେମାନେ ଏମିତି ସନ୍ତୁଳ ହେବେ ? ସଂସାର ପଥରେ ପାଦ ମିଳାଇ ଚାଲିବା ପାଇଁ ସାଥୀଟିଏ ବାଛିବା ପାଇଁ ବାପା ବୋଉ ମୋତେ ସ୍ୱାଧୀନତା ଦେଇଛନ୍ତି । ମୋ' ଉପରେ ସେମାନଙ୍କର ପ୍ରଗାଢ଼ ବିଶ୍ୱାସ ଯେ ମୁଁ ଅବାଟକୁ ଯିବିନି । ବୋଉ ମୋତେ ସତର୍କ କରେଇ ଦେଇଛି ଯେ ସେମାନେ ଆଉ ବେଶି ଦିନ ଅପେକ୍ଷା କରି ପାରିବେନି । ମୁଁ ଯଦି ମୋ' ପାଇଁ ବର ମନୋନୀତ କରି ନପାରେ ତେବେ ସେ ଦାୟିତ୍ୱ ବାପା ନେବେ । ଅନେକ ପ୍ରସ୍ତାବ ଆସି ଫେରିଗଲାଣି । ଆଜୀବନ କୁମାରୀ ହୋଇ ରହିବି ବୋଲି ଥରେ ବୋଉକୁ କହିଥିଲି, ବୋଉଠାରୁ ବାପା ଏଇ କଥା ଶୁଣି ଅନେକ କାନ୍ଦିଲେ । ସେଇ ଦିନୁ ଏ କଥା କେବେ ମୁଁ ତୁଣ୍ଡରେ ଧରିନି । ଆଜି ତା'ର ପୁନରାବୃତ୍ତି କଲେ ବାପା, ବୋଉ ଅନେକ କଷ୍ଟ ପାଇବେ । ତେବେ ମୁଁ କ'ଣ କରିବି ? ଶେଖର କ'ଣ ସତେରେ ମୋତେ ଭୁଲିଗଲେ ? ତାଙ୍କ ମନ କ'ଣ ଥରଟିଏ ପାଇଁ ବି ମୋତେ ଖୋଜେ ନି ? ଏତେ ନିଷ୍ଠୁର ହୋଇଗଲେ ସେ । ମୁଁ ଜାଣେ ସେ ଭାରି ଅଭିମାନୀ । ସେ ଯଦି ମୋତେ ନ ଚାହିଁବେ ମୁଁ କ'ଣ କରିବି ? ମୁଁ ଯେ ତାଙ୍କର ବାଗ୍‌ଦତ୍ତା । ନୀରବରେ ତାଙ୍କର ପ୍ରତିମୂର୍ତ୍ତି ପୂଜା କରି ଆସୁଛି ମୁଁ । ତାଙ୍କ ଆଦରର ସୀତାକୁ ଏ ଦୁନିଆଁର ରାବଣମାନେ ଯଦି ଅପହରଣ କରି ନିଅନ୍ତି ସେ କ'ଣ ସହିପାରିବେ ? ମୁଁ ଏବେ କି ଉପାୟ କରିବି ? ଆତ୍ମହତ୍ୟା ? ? ? ବାପା, ବୋଉଙ୍କୁ ଆଖି ଲୁହରେ ଭସାଇ ଦେଇ ମୁଁ କ'ଣ ଶାନ୍ତି ପାଇ ପାରିବି ? ଏହା ଯଦି ନ କରେ ତେବେ କ'ଣ ଶେଖର ପାଖକୁ ଯାଇ ତାଙ୍କ ଗୋଡ଼ ଧରି ତାଙ୍କୁ ନିଜର କରିବା ପାଇଁ ମିନତି କରିବି ? ଦମୟନ୍ତୀଙ୍କର ହାତ-ଗୁନ୍ଥା ଅମଳିନ ପୁଷ୍ପମାଳ ନଳ କ'ଣ ବରି ନେବେନି ? କେତେ ଘଟଣା ଅଘଟଣା ଚିନ୍ତା କରି ଯାଉଥିଲା ଅମିତା । ଭାବନାର ଉତ୍ଥାନ ପତନ ଭିତରେ ସେ ଯେପରି ଉଗନ୍ତିଗ ହୋଇ ପଡ଼ୁଥିଲା । ଅତୀତର ପ୍ରତିଟି ମୁହୂର୍ତ୍ତିକୁ ବିଶ୍ଳେଷଣ କରି ଯାଉଥିଲା ସେ । ହଜିଲା ଦିନ ଗୁଡ଼ିକର ଅଲିଭା ସ୍ମୃତି ଯେପରି ଆଜି ଭାସମାନ ଚଳଚିତ୍ର ଭଳି ତା' ଆଖି ଆଗରେ ନାଚି ଯାଉଥିଲେ ଗୋଟିକ ପରେ ଗୋଟିଏ ।

ଅତୀତ କ'ଣ ଏବେ ଫେରି ଆସନ୍ତା କି ? ସେ ଫ୍ରେଚ ପିଲାଟିଏ ହୋଇ ଯା'ନ୍ତା କି, ଅଳି କରି ବୋଉ କାନ ଧରି ଲେଟିଯା'ନ୍ତା, ବାପା ଆଦରରେ ଗେଲ କରି କୋଳରେ ବସାନ୍ତେ । ଫ୍ରକ୍ ପିନ୍ଧି ସାଥିମାନଙ୍କ ସହିତ ହସି ଖେଳି ସ୍କୁଲକୁ ଯା'ନ୍ତା । ଛାତ୍ର ଜୀବନ କେଡ଼େ ଆରାମ ଦାୟକ । ହାୟ ଜୀବନ ସେ ଛାତ୍ରଟିଏ ହୋଇ ରହିଥା'ନ୍ତା କି ? ଭାବନାର ଉତ୍ତାଳ ଲହରୀରେ ଉବୁଟୁବୁ ହେଉଥିଲା ଅମିତା ଦାସ ।

ଗୁରୁବାର । ଶିବ ମନ୍ଦିରରେ ଅନେକ ଭିଡ଼ । ଭୋଗ ଡାଲିଟି ପୂଜାରୀଙ୍କୁ ଦେଇ ଘିଅ ଦୀପ ଜଳାଇ ଠାକୁରଙ୍କୁ ମୁଣ୍ଡନୁଆଇ ପ୍ରଣାମ କଲା ଅମିତା । ହେ ପ୍ରଭୋ ! ଦମୟନ୍ତୀଙ୍କର—ଦ୍ୱିତୀୟସ୍ୱୟମ୍ବରରେ ତାଙ୍କର ହାତ ଗୁନ୍ଥା ବରଣମାଳା ପୁଣିଥରେ ବି ନଳରାଜା ଗ୍ରହଣ କଲେ । ତାଙ୍କୁ ତୁମେ ଏତେ ଦୟା କଲ । ମୋ' ପାଇଁ ଏତେ ନିଷ୍ଠୁର କାହିଁକି ପ୍ରଭୋ ! ଶେଖରକୁ ମୋତେ ଫେରାଇ ଦିଅ । ମୁଁ ଆଉ କିଛି ମାଗୁନି । ତୁମ ମାନସ କନ୍ୟାକୁ ତୁମେ ଉଦ୍ଧାର କର ।

ମନ୍ଦିରରୁ ଫେରି ବୋଉ ପାଖିରେ ଭୋଗ ଟିକିଏ ଖୁଆଇ ଦେଇ କୋଳରେ ମୁଣ୍ଡ ଗୁଞ୍ଜି କାନ୍ଦିଲା ଅମିତା । ବୋଉ କହିଲେ, "ଛି ମା' କାନ୍ଦନା, ମୁଁ ଆଶୀର୍ବାଦ କରୁଛି । ଭଗବାନ ତୋ' ମନ ଜାଣି ଫଳ ଦିଅନ୍ତୁ । ଅବିନାଶ ଅନେକ ବେଳୁ ଆସିଲେଣି । ସେ ତୋତେ ଦେଖିଲେ କେବେ ନାପସନ୍ଦ କରିବେନି । ସ୍ମିତା ସାଥିରେ ଯା' ମା' । ଅବିନାଶ ଝିଅ ଦେଖା ସାରି ଆଜି ଫେରିଯିବେ ।"

ସ୍ମିତା ସାଥିରେ ଅମିତା ଅବିନାଶ ସମ୍ମୁଖରେ ବସିଲା । ଅମିତାର ଡାହାଣ ପଟେ ସ୍ମିତା ଆଉ ବାମ ପଟେ ଅବିନାଶ ସାଥିରେ ଆସିଥିବା ତା'ର ଜଣେ ବାନ୍ଧବୀ ସ୍ୱପ୍ନା । ଅବିନାଶ କହିଲେ, "ସ୍ୱପ୍ନା ! ତୁମେ ଆରମ୍ଭ କର । ଏଠି ବେଶୀ ସମୟ ରହିଲେ ମଣିଷ 'ବୋର' ହୋଇଯିବ । ଏ ପର୍ବ ଶୀଘ୍ର ଶୀଘ୍ର ଶେଷ କର ।" ସ୍ୱପ୍ନା ଆରମ୍ଭ କଲେ, "ତୁମର ନାମ ବୋଧ ହୁଏ ଅମିତା ଦାସ । ତୁମେ ଗଣିତରେ ଏମ୍ ଏସ୍ ସି ପ୍ରଥମ ଶ୍ରେଣୀରେ ପାସ୍ କରିଛ । ହଁ ପ୍ରଥମ ଶ୍ରେଣୀ ତ ଆଜି କାଲି ମାମୁଲି ହେଲାଣି । ତା'ପରେ ତୁମେ ଝିଅ ପିଲା । ତେଣୁ ଏଥିରେ ଅସ୍ୱାଭାବିକତା କିଛି ନାହିଁ । ତୁମେ ଏବେ ଖୋର୍ଦ୍ଧା ପ୍ରାଣନାଥ କଲେଜରେ ଅଧ୍ୟାପିକା ଅଛ ନା ? ଦରମା କେତେ ? ବୋଧହୁଏ ଦରମା ସେତେଟା ଆଖିଦୃଶିଆ ହୋଇ ନ ଥିବ । ତୁମେ କାଳେ ଭଲ ଗୀତ ବୋଲି ପାର ? ରେଡ଼ିଓରେ ବି ତୁମ କଣ୍ଠ ସମୟେ ସମୟେ ଶୁଣାଯାଏ । ତୁମେ ବୋଧ ହୁଏ ଯୁବବାଣୀରେ କେତେବେଳେ କେମିତି କଲ୍ ପାଉଥିବ । ତେବେ ଏ କଳାରେ ତୁମର ସେତେଟା ସାର୍ଥକତା ଥିବା ପରି ମନେ ହୁଏନା । ଆଚ୍ଛା ହାତ କାମ କ'ଣ ସବୁ ଜାଣିଛ ? ତୁମେ ତ ରହିବ ବଦେଶରେ ।

ସେଠି କ୍ଲବ୍, ପାର୍ଟି, ମିଟିଙ୍ଗରେ ତୁମର ସମସ୍ତ ଯିବ । ହାତ କାମ ପାଇଁ ଫୁରୁସତ୍ତ ବା କେଉଁଠି ପାଇବ ? ରନ୍ଧା ବଢ଼ା କେମିତି କର ? ବିଦେଶରେ ତୁମକୁ ସେ ସବୁ ବି କରବାକୁ ହେବନ । ଆଚ୍ଛା ଟିକଏ ଛୁଡ଼ା ହେଲ !" ବାଧ ଶିଶୁଟି ପରି ଅମିତା ଛୁଡ଼ା ହେଲ । ଏଇ ନୀରବଯନ୍ତ୍ରଣା ଭିତରେ ମନ ତା'ର ହାହାକାର କରି ଉଠୁଥିଲ ।

ସାଇ ପଡ଼ଶାର କେତେକ ଝିଅ ବୋହୂ ସେତେବେଳକୁ ରୁଣ୍ଡ ହୋଇ ଯାଇଥିଲେ । ଅମିତାର ଏ ଅବସ୍ଥା ପାଇଁ ମନ ତାଙ୍କର ସମବେଦନାରେ ଭରି ଯାଇଥିଲ । ସ୍ୱପ୍ନା ଅମିତାର ଆପାଦ ମସ୍ତକ ଥରେ ନିରୀକ୍ଷଣ କରି ପୁଣି ଆରମ୍ଭ କଲେ, "କେଶଗୁଡ଼ିକ ଭାରି ସୁନ୍ଦର ଆଉ ଲମ୍ୱ, ମୁଣ୍ଡଟି ଗୋଲ୍ । ଲମ୍ୱା ଆଖି ଦୁଇଟି ଖୁବ୍ ମନଲୋଭା ହୋଇଛି । ନାକଟା ଆଉ ଟିକଏ ଲମ୍ୱା ହୋଇଥିଲେ ଭଲ ହୋଇ'ଥା'ନ୍ତା । ପଲାଶ ଓଠରେ ଧାରେ ସରୁ ହସ ଭଲ ମାନିବ । ମୁହଁଟି ପାନପତ୍ର ପରି ଗୋଲ, ଆଉ ଟିକଏ ଲମ୍ୱା ହୋଇଥିଲେ ଖୁବ୍ ସୁନ୍ଦର ହୋଇଥା'ନ୍ତା, ପାଦଗୁଡ଼ିକ ଆବଶ୍ୟକତା ଠାରୁ ଅଧିକ ସ୍ଥୂଳ ହୋଇଗଲ, ତଥାପି ଚଳିବ ବୁଝିଲ ଅବିନାଶ ! ଅବିନାଶକୁ ନିର୍ଦ୍ଦେଶ କରି ଏତକ କହିଲ ପରେ ସ୍ୱପ୍ନା ତା' ପାଖରେ ବସି ପଡ଼ିଲ ।

ଅମିତା ତଳକୁ ମୁହଁ କରି ସେଠୁ ବାହାରି ଆସିଲ । ବୋଉ କାନ୍ଧ ଧରି କହିଁ କହିଁ ହୋଇ କାନ୍ଦି ପକାଇଲ । ତା' ମୁଣ୍ଡ ଆଉଁସି ଆଉଁସି ବୋଉ କହିଲେ, "ମା' ମୁଁ ସିନା ଜନ୍ମ ଦେଇଛି, କର୍ମତ ଦେଇନି । ପ୍ରଭୁ ଆଖଣ୍ଡଳମଣି ତୋ'ର ସହାୟ । ପାଖରେ ରୁଣ୍ଡ ହୋଇଥିବା ଝିଅ ବୋହୂମାନେ କୁହାକୁହି ହେଲେ, "ଅମିତା ପରି ଗୋଟିଏ ସୁଉଲରେ ଗଢ଼ା ଝିଅକୁ ପୁଣି ବାଛବାର ଅଛି ? ଏ ତା'ର ଦୁର୍ଭାଗ୍ୟ ନୁହେଁ ତ ଆଉ କ'ଣ ?

ଆଜି ଅମିତାର ବିଭାଘର । ରୁଚିପୂର୍ଣ୍ଣ ସାଜସଜ୍ଜାରେ ରାମବାବୁଙ୍କ ଶ୍ରେଷ୍ଠ କୀର୍ତ୍ତିଟି ହସି ଉଠୁଛି । ସାହାନାଇର ଗୁଞ୍ଜରଣ ପ୍ରତ୍ୟେକଙ୍କ ପ୍ରାଣରେ ପ୍ରତିଧ୍ୱନିତ ହେଉଛି । ମାଙ୍ଗଳିକ ସଙ୍ଗୀତର ଛନ୍ଦ ସଭିଙ୍କ ପ୍ରାଣରେ ଭରି ଗଲାଣି ।

ବଧୂ ବେଶରେ ଅଭିଶପ୍ତା ଉର୍ବଶୀ ଅମିତା । ଲୋତକ ଆଜି ବାଧା ବନ୍ଧନ ମାନୁନି । ସ୍ରୋତସ୍ୱିନୀର ଅଶ୍ରୁ ଝରଣା, ଏ ଝରଣା ଶୁଖିବାର ନୁହେଁ । ପାଖରେ ସ୍ମିତା କେବଳ ନୀରବରେ ତା'ର ଅଶ୍ରୁପାତକୁ ନିରୀକ୍ଷଣ କରୁଥିଲ । ଅମିତା କହିଲ, "ଏ ମୋର କ'ଣ ହୋଇଗଲ ସ୍ମିତା ? ଜୀବନର ଅବଶିଷ୍ଟାଂଶକୁ କିପରି ବିତାଇବି ମୋତେ ଟିକଏ ବତେଇ ଦେ । ତୁ ମୋ'ର ନିକଟତ ଅଳ୍ପ ଅଙ୍କଟ ସହିଛୁ, ମୋ'ର

ଲୁହ ଦେଖି କେତେ ଲୁହ ଝାଉଛୁ, ମୋ' ପାଇଁ କେତେ କଷ୍ଟ ସହୁଛୁ, ମୋ'ର କୌଣସି କଥାକୁ ଥରଟିଏ ପାଇଁ ବି ତଳେ ପକେଇ ଦେଇନୁ । ଆଜି ମୋ'ର ଗୋଟିଏ ଶ୍ରେଷ୍ଠ ଅନୁରୋଧ ରଖିବୁ । ଏହା ପରେ ଆଉ କେବେ ତୋତେ କିଛି ମାଗିବିନି ସ୍ମିତା ।'' ଉତ୍କଣ୍ଠାର ସହିତ ସ୍ମିତା ତା' ମୁହଁକୁ ଗୃହିଁ ରହିଲା । ଅମିତା ପୁଣି କହିଲା, ''ମୋତେ ଟିକିଏ ବିଷ ଦେଇ ପାରିବୁ ସ୍ମିତା ! ମୋ' ସୁନା ଭଉଣୀ । ମୁଁ ଜାଣେ ତୁ କେବେ ମୋ' ଦୁଃଖ ସହି ପାରୁନୁ, ନିଷ୍ଟୟ ମୋ' ଆଶା ପୂରଣ କରିବୁ । କେବେ ତ ମୋ'ର କୌଣସି କଥା ଭାଙ୍ଗିନୁ, ଆଜି ତା'ର ବ୍ୟତିକ୍ରମ ହେବ କିପରି ?''

ଅମି, ତୁ କ'ଣ କହୁଛୁ ? ଓଠ ଥରାଇ କହିଲା ସ୍ମିତା ।

ରଘୁ ଆସି ଖବର ଦେଲା, ''ଦେଇ ମ ତୁମେ କାନ୍ଦୁଛ କାହିଁକି ? ଅବିନାଶ ବାବୁ ବର ହୋଇ ଆସିବେନି ବୋଲି ତାଙ୍କ ଘରୁ ଖବର ଆସିଛି ।'' ଅମିତା ଆଉ ସ୍ମିତା ଆଷ୍ଟର୍ଯ୍ୟ ହୋଇ ରଘୁକୁ ଗୃହିଁ ରହିଲେ । 'ତୁ ସତ କହୁଛୁ ରଘୁ ?' ଉତ୍କଣ୍ଠାର ସହିତ ପଗ୍ଗରିଲା ଅମିତା ।

ସ୍ମିତା ଯାଇ ଅରୁଣା ଦେବୀଙ୍କୁ ପଗ୍ଗରିଲା, ''ମାଉସୀ ! ଅବିନାଶ କାଲେ ଖବର ପଠେଇଛନ୍ତି ଆସିବେନି ବୋଲି ?'' ହଁ ଲୋ ମା' । କି ପୋଡ଼ା କପାଳୀଟା କେଜାଣି ଅମିତାଟା । ଯେଉଁ ଡାଳ ଧରୁଛି, ସେ ଡାଳ ଭାଙ୍ଗୁଛି । ଖବର ଏବେ ଆସି ପହଞ୍ଚିଲା । କ'ଣ କରାଯିବ କିଛି ବୁଦ୍ଧି ଦିଶୁନି । ପିଲାଟାର ଭାଗ୍ୟରେ କ'ଣ ଅଛି କେଜାଣି ? ଏ ଖବର ଶୁଣି ବାପା ତା'ର ଥକ୍କା ହୋଇ ବସିଛନ୍ତି ଯେ କାହାରିକୁ କିଛି କହୁନାହାନ୍ତି । କାନ୍ଦ କାନ୍ଦ ହୋଇ ଅରୁଣା ଦେବୀ କହିଲେ ।

'ଅବିନାଶ ବର ହୋଇ ଆସିବେନି' ଏଇ ସମ୍ବାଦ ରାମବାବୁଙ୍କ ପ୍ରାଣକୁ ଥରାଇ ଦେଲା । ହତୋତ୍ସାହ ହୋଇ ପଡ଼ିଲେ ସେ । ଦିନତମାମ ପରିଶ୍ରମ ସାଙ୍ଗକୁ ଏ ଦୁଃଖାବହ ସମ୍ବାଦ ତାଙ୍କର ଆଗାମୀ ସ୍ୱପ୍ନକୁ ଉପହାସ କରୁଥିଲା । ଚିନ୍ତାର ବୋଝ ଅସହ୍ୟ ହେଉଥିଲା ତାଙ୍କୁ । ଏକୋଇର ବାଲା ଏଇ ଅମିତା । ତା'ର ପାଇଁ, କେତେ ସ୍ୱପ୍ନ ତାକୁ ନେଇ ସବୁ ଆଜି ପାଣିଫାଟିଗଲା । ସର୍ବଗୁଣ ସମ୍ପନ୍ନା ଏଇ ଅଲଅଲି ଅମିତା ବଡ଼ ହୀନ କପାଳୀ । ଭାଗ୍ୟ ତା'ର ଏତେ ଶ୍ରେଷ୍ଠ ବୋଲି କିଏ ଜାଣିଥିଲା ? ଶେଖର ଉପରେ ଭରସା କରି ଶେଷରେ ସେ ନିରାଶ କଲା । ଆଜି ଅବିନାଶ ବର ହୋଇ ଆସିବନି ବୋଲି ମନା କରି ଦେଲା । ମଙ୍ଗୁଲା କନ୍ୟାର କ'ଣ ହେବ ? ଆଉ କେତୋଟି ମୂହୁର୍ତ୍ତ ପରେ ସାହାନାଇର ତାଳେ ତାଳେ ତା'ର ହାତ ଗଣ୍ଠିର

ଦୃଶ୍ୟ ସମସ୍ତଙ୍କୁ ଚମକୃତ କରୁଥା'ନ୍ତା । ହେଲେ ଏମିତ ସବୁ ଓଲଟ ପାଲଟ ହୋଇଗଲା କାହିଁକ ? କେମିତ ଅବଶିଷ୍ଟ ସମସ୍ତ ଡକ ବଢବ ଅମିତାର ?? ବାପା ହୋଇ ତା'ର ଏତେ ଦୁଃଖ ମୁଁ କେମିତ ଦେଖିବ ??? କେମିତ ସହିବ ତା'ର ଆଖିର ଶ୍ରାବଣୀ ଧାର ? କ'ଣ କହି ତାକୁ ପ୍ରବୋଧନା ଦେବ ମୁଁ ? ହତଭାଗୀ କାହିଁକ ମୋ' କୋଳରେ ଜନ୍ମ ନେଲା ? ତାକୁ ଏତେ ସୁନ୍ଦର କରି, ଏତେ ଗୁଣ ଦେଇ ତା' କପାଳରେ ଭଗବାନ ଏତେ ଦୁଃଖ ଲେଖିଲେ କାହିଁକ ? ସତରେ ସେ କ'ଣ ଅଲୋଡ଼ା ପାଉଁଶ ହୋଇ ରହିଯିବ ? ଭାବନାର ଏଇ ଉତ୍ତାଳ ଲହଡ଼ିରେ ଉବୁଟୁବୁ ହେଉ ହେଉ ଅରୁଣା ଦେବୀଙ୍କୁ ଥରେ ଡାକ ଦେଇ ଚେତା ଶୂନ୍ୟ ହୋଇ ପଡ଼ିଲେ ରାମ ବାବୁ । ତଡ଼ିତ୍ ବେଗରେ ଧାଇଁ ଗଲେ ଅରୁଣା ଦେବୀ ସ୍ୱାମୀଙ୍କ ପାଖକୁ । ତାଙ୍କ ପାଦ ଠାରୁ ମୁଣ୍ଡ ଯାଏ ଥରେ ହାତ ବୁଲାଇ ଆଣି କାନ୍ଦି ଉଠିଲେ ସେ । "ଧାଇଁ ଆ'ରେ ଅମି, ଦେଖ ତୋ' ବାପାଙ୍କର କ'ଣ ହୋଇଗଲା । ମୁଁ କମିତ ବଞ୍ଚିବ ? କଏ ମୋତେ ସାହାସ ଦେବ ? କଏ ଅଛ ଟିକଏ ଆସି ଦେଖ, ଏହାଙ୍କର କ'ଣ ହୋଇଗଲା ? କାହିଁ କଛ କହୁ ନାହାନ୍ତି, ମୋତେ କଛ ବୁଝି ହେଉନ । 

ରାମ ବାବୁଙ୍କୁ ମେଡ଼ିକାଲ ନିଆଗଲା । ବେଡ଼ ଉପରେ ଥାଇ ସେ ଅରୁଣା ଦେବୀଙ୍କୁ ଥର ଥର କଣ୍ଠରେ କହିଲେ, "ଅମି ବୋଉ, ମୁଁ ଆଉ ବଞ୍ଚିବିନ । ଅମି ମୋ'ର ଅନାଥ ହୋଇଗଲା, ଏ ଜୀବନରେ ତା' ପାଇଁ କଛ କରି ପାରିଲିନ । ମା' ମୋ'ର ଜୀବନ ସାରା ଲୁହ ଢାଳିବ, ମୁଁ କେମିତ ବାପ ହୋଇ ସହିବ ? ତା' ଝିଅର ବୁଝିବ । ତାକୁ ବୁଝାଇ କହିବ । ମୁଁ ଯାଉଛ ।

ରାମବାବୁଙ୍କର ଜୀବନ ଦୀପ ଲିଭିଗଲା ସବୁଦିନ ପାଇଁ ।

ଠିକ୍ ପରେ ପରେ ବିକାଶ ରାୟ ଆସି ପହଞ୍ଚିଲେ ଏବଂ ସିଂତାକୁ ବି ନିର୍ଦ୍ଦେଶ କରି କହିଲେ, "ବୁଝିଲ ସିଂତା, ଶେଖର ଲ୍ୟୁସ୍କର୍ଗରୁ ଫେରି ଆସିଛ । ସେ ପୁଣ୍ଣାର କଲେଜ୍ଜର ଭାବେ ଦୁଇଦିନ ତଳେ ଯୋଗ ଦେଇଛ । ଅମିତାର ଆଜ ବାହାଘର ହେଉଥିବା କଥା ମୁଁ ତାକୁ ଚିଠିରେ ଲେଖିଥିଲି । ଫେରନ୍ତା ଡାକରେ ସେ ନିଜକୁ ଧିକ୍କାର କରି କେତେ କଥା ଲେଖିଛ, ଆଉରି ଲେଖିଛ, "ଅମିତା ଚାଲିଗଲା ପରେ ଶେଖରର ଜୀବନର ମାନେ କଛ ନୁହଁନ । ତୁମ ଚିଠି ପାଇଲା ପରଠାରୁ ଭାରତ ଫେରିବାର ଆଶା ମୋ'ର ମଉଳି ଯାଇଛ, ଯଦ ଫେରିବ ସେ ଥିଲା ମୋର ପ୍ରେରଣାର ଉତ୍ସ ତା' ବିହୁନେ ସେ ମୁଁ କିପରି ବଞ୍ଚିବ ସେଇ କଥା ଭାବିବାକୁ ମୋତେ ସମସ୍ତ ଅଣ୍ଡୁନ ।" ଆଜ ତା' ଚିଠି ମୁଁ ପାଇଲି । ତା ଚିଠିର ଦୂଚନା

ଅନୁମାସ୍ତି ଦିନ ତଳେ ସେ ଓଡ଼ିଶାରେ ପହଞ୍ଚିଛି । କଲେକ୍ଟରଙ୍କର ଏତେବଡ଼ ବଙ୍ଗଳାରେ ସେ ଏକା । ତାକୁ ସାକ୍ଷାତ କରିବାକୁ ଗୃହୁଁ ଥିବା ଲୋକମାନେ ସାକ୍ଷାତ ନ ପାଇ ଫେରୁଛନ୍ତି । ଅନେକ ଦୁଶ୍ଚିନ୍ତାର ବୋଝକୁ ମୁଣ୍ଡରେ ଧରି ସେ ଚୁପ୍‌ଚାପ୍ ବସି ରହୁଛି ।

ଚିଠି ପାଇ ମୁଁ ସଙ୍ଗେ ସଙ୍ଗେ ଧାଇଁଗଲି ପୁରୀ । ଅନେକ କୌଶଳ ପରେ ତା'ର ସାକ୍ଷାତ ପାଇଲି । ମୋତେ ଦେଖିଲା ମାତ୍ରେ ସେ ଧୀର ଆର୍ଦ୍ର କଣ୍ଠରେ କହିଲା, "ବୁଝିଲି ବିକାଶ, ଦୁଃଖ ଆଉ ସନ୍ତାପରେ ମୋ' ହୃଦୟ ପୂର୍ଣ୍ଣ କରିଦେଇ ଅମିତା ଚାଲିଗଲା ପରେ ମୋ' ପିଣ୍ଡରେ ପ୍ରାଣଟା ଯେ କପରି ରହିଛି ମୁଁ ବୁଝି-ପାରୁନି । ସେ ଆଜି ଅନ୍ୟ କାହାର ଜାୟା । ତା' ସମ୍ପର୍କରେ ଏବେ ଚିନ୍ତା କରିବା ମୋ'ର ଉଚିତ ନୁହେଁ । ତଥାପି ଏ ଜୀବନରେ ମୁଁ ତାକୁ ଭୁଲି ପାରିବିନି । ମୋ' ଜୀବନର ପ୍ରତି କ୍ଷେତ୍ରରେ, ପ୍ରତି ମୁହୂର୍ତ୍ତରେ ତା'ର ପ୍ରତିମୂର୍ତ୍ତି ମୋତେ ଦେଖା ଦେବ ହିଁ ଦେବ । ତୁମ ଆଗରେ ସତ କହିଲେ କ୍ଷତି ବା କ'ଣ ? ଅମି ତା' ଜୀବନ ଅପେକ୍ଷା ମୋତେ ଅଧିକ ବଡ଼ ବୋଲି ଭାବେ । ହେଲେ ମୁଁ ତାକୁ ଦେଲି କ'ଣ ? ତା' ଠାରୁ ସ୍ନେହ ଆଉ ଶ୍ରଦ୍ଧା ପାଇ ମୁଁ ତା'ର ସନ୍ତାପିତ ପ୍ରାଣକୁ ଟିକିଏ ଶୀତଳ କରି ପାରିଲିନି ।"

ବିକାଶ ଏଇ କଥା କହିଲା ବେଳେ ସିନ୍ଧୁ ତା ଖୁସିରେ ଫାଟି ପଡ଼ୁଥିଲା । ଅମିତା ଭାଗ୍ୟାକାଶରେ ସୂର୍ଯ୍ୟୋଦୟର ପ୍ରଥମ କିରଣ ଅନୁଭବ କରୁଥିଲା ସେ । ସଙ୍ଗେ ସଙ୍ଗେ କହି ପକାଇଲା, "ବିକାଶବାବୁ, ଚାଲନ୍ତୁ ଶେଖରକୁ ଏଠିକି ନିମନ୍ତ୍ରଣ କରି ଆଣିବା ।"

"କାହିଁକି, କାହିଁକି ତାକୁ ଏଠିକି ଆଣିବା ? ଲାଭ ବା କ'ଣ ହେବ ? ? ପରନ୍ତୁ ହୁଏତ ଅଦୃଶ୍ୟ ଦଣ୍ଡ ପାଇବେ ଏବଂ ଏହା ପରସ୍ପର ପ୍ରତି ଚେଷ୍ଟା ପା'ରେ ଚିହ୍ନ ଦେଇଭଳି ହେବ । ଶେଖର ଅବହେଳା କରିଛି, ଦୁଃଖ ତାକୁ ଭୋଗିବାକୁ ହେବ । ଏଥିରେ ବା ହାତ କାହାର ?"

—କହିଲା ବିକାଶ ।

"ଆପଣ ବୋଧହୁଏ ଜାଣି ନାହାନ୍ତି ବିକାଶବାବୁ, ଅକ୍ରନାଶ ଏଠିକି ବର ହୋଇ ଆସିବେନି ବୋଲି ଖବର ପଠାଇଛନ୍ତି । ତାଙ୍କର ଯୁକ୍ତି ଯେ ଅମିତାଠାରେ ଆଧୁନିକତାର ସ୍ପର୍ଶ ନାହିଁ । ମଫସଲି ଝିଅଟିକୁ ସାଥୀ କରି ସେ ତାଙ୍କ ଜୀବନକୁ

ନଷ୍ଟ କରିବେ କାହିଁକି ? ଅମିତା ଓଠରେ ଆଙ୍ଗ୍ଲୋଏ ବଦଳାର ଲିପଷ୍ଟିକ୍ ଲଗାଇ ପାରିବନି, ହାଇହିଲ୍ ପିନ୍ଧି ଅଣ୍ଟେଇ ବଣ୍ଟେଇ ଚାଲି ପାରିବନି, ହେୟାର ଷ୍ଟାଇଲ୍ କରି ପାରିବନି, ନାଇଟ୍ ଗାଉନ୍ ପିନ୍ଧି ପାରିବନି ଆଉ ସର୍ବୋପରି କ୍ଲବ, ପାର୍ଟିରେ ଆଖି ନଚେଇ ଇସାରା ଦେଇ ପାରିବନି । ଏ ସବୁ ନଥିଲେ ଆଧୁନିକ ଯୁଗ ସହିତ ସେ ତାଳ ଦେଇ ଚାଲିବ ବା କିମିତି ?'' କହିଲା ସ୍ମିତା ହସିହସି । ବିକାଶ କହିଲା, ''ସତେ ନା କ'ଣ ? ଏ ତ ଖୁବ୍ ମଜା ଖବର । କି ଭାଷାରେ ଭଗବାନଙ୍କୁ ଧନ୍ୟବାଦ ଜଣାଇବି ମୁଁ ଭାଷା ଖୋଜି ପାଉନି । ଭଗବାନ୍ କେଡ଼େ ମହତ୍ ପୁରୁଷ । ନଦୀର ଉଦ୍ଦେଶ୍ୟ ସେ ମିଶିଯିବ ସାଗରର ପ୍ରଶାନ୍ତ ବକ୍ଷରେ, ଏକ କ୍ଷୁଦ୍ର ଝରଣା ଦେହରେ ନୁହେଁ । ଅମିତାର ଶୋକୋଚ୍ଛ୍ୱାସ ଶେଖର ପାଇଁ ଉଦ୍ଦିଷ୍ଟ, ଅବିନାଶ ପାଇଁ ନୁହେଁ । ସେଇଥି ପାଇଁ ଆପଣ ଶେଖରକୁ ନିମନ୍ତ୍ରି ଆଣିବା ପାଇଁ ଅଣ୍ଟାଭିଡ଼ି ବାହାରି ପଡ଼ିଛନ୍ତି । ଧନ୍ୟ ଆପଣ ଆଉ ଧନ୍ୟ ଆପଣଙ୍କର ବାନ୍ଧବୀ ପ୍ରୀତି ।''

ଦ୍ୱି'ପହର ଝାଞ୍ଜି ଝାସରେ ଧୂସର ସହରର ଶୋଭା କିମିତି ଅଧିାଭିବିକ ପ୍ରତୀୟମାନ ହେଉଛି । ଚାରିଆଡ଼େ ନୀରବତାର ଗ୍ଲାନି । ବ୍ୟଥାତୁର କପୋତୀ ପକ୍ଷ ଝାଡ଼ି ତା'ର ମର୍ମ ବେଦନା ପ୍ରକାଶ କରୁଛି । ପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ମୁଣ୍ଡି ଆଟିଏ ମାରି କଲେକ୍ଟରଙ୍କ ବଙ୍ଗଳା ଗେଟ୍ ପାଖରେ ପହଞ୍ଚିଲା ସ୍ମିତା ।

''ସାହେବଙ୍କ ସହିତ ଦେଖା ହୋଇ ପାରିବନି ମା' ।''—କହିଲା ନେପାଳୀ ଦରୱାନ ।

—''ମୁଁ ସାହେବଙ୍କ ବାଲ୍ୟ ବାନ୍ଧବୀ । ତାଙ୍କୁ ମୋ'ର ଆଜି ଦେଖା କରିବା ନିହାତି ଜରୁରୀ । ଗେଟ୍ ପାରିହୋଇ ଭିତରକୁ ଗଲା ସ୍ମିତା । କଲିଂବେଲ୍‌ରେ ଟିପ ଲଗେଇ ପଛକୁ ଘୁଞ୍ଚି ଆସିଲା ସେ । ଦ୍ୱାର ଖୋଲିଗଲା । ବିପର୍ଯ୍ୟସ୍ତ କେଶବାସ, ହାତରେ ଖଣ୍ଡେ ମାଗାଜିନ୍ ଧରି ବାହାରି ଆସିଲେ ଶେଖର ଚୌଧୁରୀ କଲେକ୍ଟର । ସ୍ମିତାକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ସେ, କହିଲେ, ସ୍ମିତା ତୁମେ ଏଠି ! ମୁଁ ସ୍ୱପ୍ନ ଦେଖୁନାହିଁ ତ ? ଆସ ଭିତରକୁ ।'' ସ୍ମିତାକୁ ବସିବାକୁ ନିର୍ଦ୍ଦେଶ କରି ସୋଫା ଉପରେ ବସି ପଡ଼ିଲେ ସେ ।

—''କିମିତି ହଠାତ୍ ମୋ' କଥା ମନେ ପଡ଼ିଗଲା ? କିମିତି ଜାଣିଲ ମୁଁ ଭାରତ ଫେରିଲିଣି ବୋଲି ? ? ଅନେକ ଦିନ ହେବ ଦେଖା ହୋଇନି, ତୁମର ସେ ଫାଜିଲାମି ଅଛି ନା ଛାଡ଼ିଲଣି ? ? ?''

ସ୍ମିତା କେଉଁଠୁ ଆରମ୍ଭ କରିବ ଭାବି ପାରୁନଥିଲା । ଏତ ଗପିବାର ବେଳ ନୁହେଁ, ଜୀବନ ମରଣ ସମସ୍ୟା ଅମିତାର । ସେ ଆରମ୍ଭ କଲା, "ଆପଣ ବଡ଼ ଲୋକ, ବଡ଼ ଘରକଣ୍ଟ, ବଡ଼ କଥା, ବଡ଼ ନଜର । ଶ୍ରେଷ୍ଠ ମଣିଷଙ୍କ ଖବର ରଖିବାରେ ମାଦକତା କାହିଁ । ହେଲେ ଏଇ ଶ୍ରେଷ୍ଠ ମଣିଷମାନେ ସବୁବେଳେ ସମସ୍ତଙ୍କ ଖବର ରଖିଥାନ୍ତି ।"

—"ଆରେ ମୋତେ ଆପଣ କହିବାରେ କ'ଣ ମାନେ ଅଛି ? ମୁଁ ପରା ତୁମରିମାନଙ୍କ ସାଥିରେ ବଢ଼ିଛି, ଖେଳିଛି ।" ସାଙ୍ଗଙ୍କୁ ଆପଣ କହିବାରେ ଯୁକ୍ତି କାହିଁ ? ମୋତେ ତା'ହେଲେ ତୁମେ ଏତେ ଶୀଘ୍ର ପର କରି ଦେଉଛ ? ହୁଁ ତୁମର ଫିଲୋସଫି ବୁଝି ପାରିଲିନି । କ'ଣ ଟିକିଏ ସ୍ପଷ୍ଟ କରି କୁହ ।"

—"ଶେଖର ! କେବେ ଥରେ ଚିନ୍ତା କରିଛ ଅମିତା ବୋଲି ଝିଅଟିଏ ତୁମ ସାଥିରେ ପଢ଼ୁଥିଲା ? ତୁମକୁ ସେ କେତେ ନଜର କରି ନଥିଲା ? ଥରେ କେବେ ମୁହୂର୍ତ୍ତିଟିଏ ପାଇଁ ବି ତା' କଥା ଭାବିଲନି ତୁମେ । ସେତ ଆଉ ତୁମ ଭଳି ପୁରୁଷ ନୁହେଁ, ଝିଅଟିଏ । କେତେ ଦୁଃଖ କଷ୍ଟ ସହି ସବୁ ବାଧା ବନ୍ଧନକୁ ପଛରେ ପକାଇ ତୁମକୁ ଏଯାଏ ଅପେକ୍ଷା କରିଥିଲା । ତୁମେ ତ ଦେଖା ନ ଦେଲ ନାହିଁ, ଥରେ ଚିଠି ଖଣ୍ଡେ ଲେଖିଥିଲେ କ'ଣ ବା ତୁମର କ୍ଷତି ହୋଇ ଯାଉଥିଲା ? ମଣିଷ ଏତେ ସ୍ୱାର୍ଥପର ହୋଇଯାଇପାରେ ? ତୁମର ଯେଉଁ ମହତ୍ତ୍ୱ ସ୍ୱାର୍ଥ ଥିଲା ସେଥିଲାଗି ତୁମକୁ କେହି ଭିକ ମାଗୁ ନଥିଲେ ? ତା' ପ୍ରତି ତୁମେ ଏତେ ନିଷ୍ଠୁର ହୋଇଗଲ କିପରି ? ପିଲାଟା କେତେ ବୋଝ ସହିବ ? ଘରେ ବାପା ବୋଉଙ୍କର ତାଗିଦ୍ ଯେଉଁଦିନ ଠାରୁ ତୁମେ ମଉସାଙ୍କୁ ଶୂନ୍ୟ ହୃଦୟରେ ଫେରେଇ ଦେଲ, ବାହାରେ ସାଙ୍ଗସାଥି-ମାନଙ୍କର ଟାହିଲି, ଥଟ୍ଟା, କ'ଣ ବା ସେ କରିଥା'ନ୍ତା ? ତୁମକୁ ଝୁରି ଝୁରି କଣ୍ଟା ହୋଇଗଲା ପରେ । ଆଜି ପ୍ରଥମ ଥର ପାଇଁ ସ୍ମିତା ଆଖିରେ ଲୁହ ଦେଖୁଛି ଶେଖର । ମରମ ତଳ ତା'ର ବ୍ୟଥାରେ ଭରି ଯାଉଛି, ପ୍ରାଣ କାନ୍ଦି ଉଠୁଛି । ଅକୁହା, ଅଦେଖା ବେଦନାରେ ଅନ୍ତର ଜଳିଯାଉଛି । ଶେଖର ଚୌଧୁରୀ ବଞ୍ଚିଥାଇ ବି ମୃତ ।

—"ଓଃ ଚୁପ୍ ହୁଅ ସ୍ମିତା । ମୁଁ ଆଉ ଶୁଣି ପାରୁନି । ମୋର କଣ୍ଠ, ବକ୍ଷ ବିଦୀର୍ଣ୍ଣ ହୋଇଯାଉଛି ।

"ମୋତେ ବିଶ୍ୱାସ କର ସ୍ମିତା । ଦିଲ୍ଲୀ ଗଲା ପରେ ମୁଁ ଅମିକୁ ଅନେକ ଚିଠି ଲେଖିଛି । ଯଦିଓ ମୋତେ ବିଦାୟ ଦେଲାବେଳେ ତାକୁ ମନେ ନ ପକାଇବାକୁ

ସେ ଉପଦେଶ ଦେଇଥିଲ । ମୁଁ କିନ୍ତୁ ମୋର ଜୀବନରେ ରଜନୀକାନ୍ତ ମଧ୍ୟରେ ତାକୁ ଦେଖି ମନେ ମନେ ଗଢ଼ୁଥିଲି, କାରଣ ସେ ଥିଲା ମୋ ପ୍ରେରଣାର ଉତ୍ସ । ହେଲେ ପ୍ରତ୍ୟେକ ଚିଠିର ଫେରନ୍ତା ତାକୁ ଚାହିଁ ଚାହିଁ ମୁଁ କ୍ଳାନ୍ତ ହୋଇଛି । ମୋର ଏଇଆ ଧାରଣା ହେଲା ଯେ ପାଖରୁ ଚାଲିଗଲେ ମଣିଷ ମନରୁ ବି ଚାଲିଯାଏ । ତେଣୁ ଅମି ମୋତେ ମନରୁ ଅନ୍ତର କରିଛି, ତା ସତ୍ତ୍ୱେ ବି ଆଇ. ଏ. ଏସ ଟ୍ରେନିଂକୁ ଯିବା ପୂର୍ବରୁ ଅମିକୁ ମୁଁ ଶେଷ ଚିଠି ଲେଖିଥିଲି ଅନେକ ଅଭିମାନରେ । ସେ ଚିଠିର ଭାଗ୍ୟ ବି ସେଇଆ ।"

—"ତୁମେ ସତ କହୁଛ ଶେଖର ? କାହିଁ ଅମିତା ମୋତେ ତ କେବେ ତୁମ ଚିଠି କଥା କହିନ, ବରଂ ଅନେକ ଦୁଃଖ କରିଛି ତୁମର ନୀରବତା ପାଇଁ ।"

—"ମୋତେ ବିଶ୍ୱାସ କର ସ୍ମିତା । ତୁମକୁ ମିଛ କହି ଲାଭ କ'ଣ ପାଇବି ? ଦହନର ତୀବ୍ରତା ବଢ଼ିବ ସିନା, କେବେ ପ୍ରଶମିତ ହେବନି ।"

ସଙ୍ଗେ ସଙ୍ଗେ ବିକାଶ ଯାଇ ଶେଖରର ହାତ ଧରି କହିଲା, "ଶେଖର, ମୋତେ କ୍ଷମା କର ।" ଆଖିରେ ତା'ର ଲୁହ । ଶେଖର ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନବାଚୀ ଦୃଷ୍ଟିରେ ଚାହିଁଲା ବିକାଶ ଆଡ଼େ । ବିକାଶ ତଳକୁ ମୁହଁ କରି କହିଲା, "ତୁ ଏବେ ଜାଣି ବୁଝି ପାରିବୁନି ଶେଖର, ବୁଝିବା ପୂର୍ବରୁ ମୋତେ ପ୍ରତିଶ୍ରୁତି ଦେ ମୋ ଭୁଲ ପାଇଁ ମୋତେ କ୍ଷମା ଦେବୁ ନା ନାହିଁ ।" ଶେଖର କହିଲା, "ବିକାଶ, ତୁ କ'ଣ କହୁଛୁ ମୁଁ କିଛି ବୁଝି ପାରୁନି । ସ୍ପଷ୍ଟ ନ କହି ମୋତେ ଏପରି ଦ୍ୱନ୍ଦ୍ୱ ଅବସ୍ଥାରେ ପକାଉଛୁ କାହିଁକି ? ବିକାଶ କହିଲା, "ନିଶ୍ଚୟ କହିବି ଆଜି କହିବାକୁ ମୁଁ ସୁଯୋଗ ପାଇଛି । ମୋ' ଭୁଲ୍‌ର ପ୍ରାୟଶ୍ଚିତ୍ତ ନ କଲେ ମୁଁ ପାଗଳ ହୋଇଯିବି ।" ବିକାଶ ! ତୁ କ'ଣ କହିବାକୁ ଚାହୁଁ ? ଆଶ୍ଚର୍ଯ୍ୟରେ ଶେଖର ପାଟିରୁ ଏତିକି ବାହାରି ଆସିଲା । ସ୍ମିତା କହିଲା, 'ବିକାଶବାବୁ ! କ'ଣ କହିବାର ଅଛି ସ୍ପଷ୍ଟ କୁହନ୍ତୁ । ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? ଆପଣ କ'ଣ ଶେଖରଙ୍କୁ ଜାଣିନାହାଁନ୍ତି ।" ଅଣ୍ଟାରୁ ବାହାର କରି ଶେଖର ହାତକୁ ଏକ ଷ୍ଟ୍ରେଟ ଚିଠି ପ୍ୟାକେଟ୍‌ଟିଏ ବଢ଼ାଇ ଦେଇ ବିକାଶ କହିଲା, "ଏ ତୁମର ଆଉ ଅମିତାର ସମସ୍ତ ଚିଠି । ତୁମ ଦୁହିଁଙ୍କର ଆଜି ଏ ଅବସ୍ଥା ପାଇଁ ମୁଖ୍ୟତଃ ମୁଁ ହିଁ ଦାୟୀ । ମୋତେ ମାର୍ଜନା କର ।

ଶେଖର ଆଉ ସ୍ମିତା ଏକାବେଳକେ କହିଲେ, ବିକାଶ !

—ସମସ୍ତଙ୍କ ସାମ୍ନାରେ ବିକାଶ ଛିଡ଼ା ହୋଇଥିଲା ଅପରାଧୀ ପରି ।

ନୀରବତା ଭଙ୍ଗକରି ସ୍ମିତା କହିଲା, ଯାହା ହେବାର ହେଲାଣି, ଉଠ ଶେଖର ! ଆସ ଦେଖିବ ତୁମ ଅମି କିପରି ତୁମରି ପାଇଁ ବଧୂ ବେଶରେ ଅପେକ୍ଷା କରି ବସିଛି । ଆସ ଦେଖିବ ।"

—"ସତ କହୁଛ ସ୍ମିତା ? ମଉସା, ମାଉସୀ ମୋତେ କ୍ଷମା କରିଛନ୍ତି ? ଅମି ମୋତେ ମାର୍ଜନା କରିଛି ? ତେବେ ସେ ଇଞ୍ଜିନିୟର ?"

—"ସେ କଥା ପରେ ଅମି ଠାରୁ ଶୁଣିବ । ଶୀଘ୍ର ବାହାରି ପଡ଼ । ଉଠ ।"

—"କ'ଣ ଦେଇ ତୁମ ଋଣ ପରିଶୋଧ କରିବି ସ୍ମିତା ? ମୋ' ଜୀବନର ତୁମେ ଏକ ଶକ୍ତ ମାଇଲ ଖୁଣ୍ଟ ' ମୋ' ଜୀବନର ଦୁଃଖ ସୁଖ, ପତନ ଆଉ ଉତ୍ଥାନର ତୁମେ ହିଁ ଏକମାତ୍ର ସାକ୍ଷୀ ।"

ରାତି ଦଶଟା, କିଏ କେଉଁଠି ଘୁମେଇ ପଡିଲେଣି । ମାଙ୍ଗଳିକ ସଙ୍ଗୀତର ମୂର୍ଚ୍ଛନା ହଜିଗଲାଣି । ସାହାନାଇର ସ୍ୱର ଲୁଚି ଗଲାଣି । ରାମବାବୁଙ୍କ କ୍ୱାର୍ଟର ପାଖରେ ଗାଡ଼ି ବ୍ରେକ୍ କଲା । ସ୍ମିତା, ବିକାଶ ଓହ୍ଲେଇ ପଡ଼ିଲେ ।

ଘରଆଡ଼ ନୀରବ । କାହାରି ମୁହଁରେ ଭାଷା ନାହିଁ । ଅରୁଣା ଦେବୀ କାନ୍ଦି କାନ୍ଦି ଆସି ଦୁଆର ପାଖରେ ଛିଡ଼ା ହେଲେ । ଯେଉଁ ଶେଖରକୁ ସେ ଏତେ ଶ୍ରଦ୍ଧା କରୁଥିଲେ ସେଇ ଶେଖର ଏବେ ତାଙ୍କ ଆଗରେ ଉପସ୍ଥିତ । ତାକୁ ଦେଖି ତାଙ୍କର ଭାବାନ୍ତର ସୃଷ୍ଟି ହେଉନି । ଆଶ୍ଚର୍ଯ୍ୟ ହେଲା ସ୍ମିତା । ଅରୁଣା ଦେବୀଙ୍କୁ ହଲାଇ ଦେଇ କହିଲା ସେ, "ମାଉସୀ କ'ଣ ହେଲା ତୁମର ? ତୁମ ଆଦରର ଶେଖର ପରା ଗାଡ଼ିରେ । ତାଙ୍କୁ ବନ୍ଦେଇ ନେବାର ବ୍ୟବସ୍ଥା କର । ଆଗ ଭଳି ଆଜି ଆଉ କ'ଣ ସେ ବଲେ ବଲେ ତୁମ ଘରକୁ ଆସିବେ ।" ପାଟିରେ ଲୁଗା ଦେଇ କାନ୍ଦି ଉଠିଲେ ଅରୁଣା ଦେବୀ ।

—"ମା' ମୋ' ସଂସାର ସରିଗଲା । ମୁଁ ଭାସି ଗଲି, ମଉସା ଆଉ ନାହାନ୍ତି । କିଏ ମୋତେ ଶାନ୍ତ୍ୱନା ଦେବ ? କିଏ ମୋତେ ବଳ ଦେବ ? ? ଅମି ଆଉ କାହାର ହେବ ? ଅମିର ଦୁଃଖରେ କିଏ ଆଉ ଆଖିରୁ ଲୁହ ପୋଛିବ ?"

ରାମ ବାବୁଙ୍କ ମର ଶରୀରକୁ କବଳିତ କରି ଅଗ୍ନିର ଲେଲିହାନ ଶିଖା ଉଠୁଥିଲା ଉପରକୁ ଖୁବ୍ ଉପରକୁ । ଅଗ୍ନିଶିଖାର ଏଇ ବିକଟାଳ ରୂପ ଦେଖି ଡରି ଯାଉଥିଲେ ଅରୁଣା ଦେବୀ । ଅନ୍ୟମାନେ ଅନେକ ଟିକେ ଲୁକ୍ ଗଲେଣି । ପାଖରେ ଅମିତା ଆଉ ଶେଖର । ଅଗ୍ନିର ଏଇ ତେଜ କ୍ରମେ କମିଯିବ । ପରିଶେଷରେ

ଏହା ସ୍ୱାମୀଙ୍କ ଶରୀରକୁ ନଷ୍ଟ ହିଁ କରି ଉଡ଼େଇ ଯିବ । ସ୍ୱାମୀଙ୍କ ସ୍ମୃତି ସବୁ ପଡ଼ି ରହିବେ ଅନେକ ଯୋଜନ ଦୂରରେ ଅଲୋଡ଼ା ହୋଇ, ଅରୁଣା ଦେବୀ ଭବା ବେଶରେ ଲୁଗା କାନରେ ଲୁହ ପୋଛୁଥଲେ । ଲୁହ ଭିଜା ଆଖିରେ ଶେଖର ଆଡ଼େ ଗୁହିଁଲେ ସେ ।

—"ବାପା ଶେଖର ! ବାପ ଛେଉଣ୍ଡ ଅମିତାର ସାହା ଆଉ କେହି ନାହିଁ । ତା ବାପାଙ୍କ ଜୁଇକୁ ସାକ୍ଷୀ ରଖି ତାକୁ ତୁମର ହାତରେ ଟେକି ଦେଲି । ତାଙ୍କର ବଡ଼ ଆଶା ଥିଲି ତୁମ ଦୁହିଁଙ୍କୁ ବେଦୀ ଉପରେ ଦେଖିଥା'ନ୍ତେ । ହେଲେ ଭଗବାନ ତାଙ୍କୁ ଠିକ୍ ତା ପୂର୍ବରୁ ଛଡ଼ାଇ ନେଲେ । ଆଉ ସ୍ୱର୍ଗରେ ତାଙ୍କର ଆତ୍ମା ଟିକିଏ ଶାନ୍ତି ପାଇବ ତ ! ଆଜି ଠାରୁ ତୁମେ ଅମିର ସାହା, ଭଲ ମନ୍ଦ, ସୁଖ ଦୁଃଖର ସାଥି । ଅଥଳ ଜଳରେ ବୁଡ଼ି ଯାଉଥିବା ଲୋକର କୁଟା ଖିଏ ବି ସାହା । ତୁମେ ମୋତେ ନିରାଶ କରିବନି ।" ଶେଖର ଗୁହିଁଲା ଅମିତା ଆଡ଼େ । ଚଳା ଚଞ୍ଚଳ ମୃଗ ନୟନାର ଗୁହାଣୀରେ ଆଜି ମାଦକତା ନାହିଁ । ପଲାଶ ଓଠରୁ ଝରୁନି ଧାରେ ସରୁ ହସ । ଝାଉଁଳା ଫୁଲର ବାସ୍ନା କେମିତି ଏକ ଅହେତୁକ କମ୍ପନ ସୃଷ୍ଟି କରୁଛି ଶେଖର ପ୍ରାଣରେ । ଦଗ୍ଧୀଭୂତ ପ୍ରାଣ ତା'ର କାନ୍ଦି ଉଠୁଛି ଗୁମୁରି ଗୁମୁରି । କ'ଣ ହେବାକୁ ଯାଇ କ'ଣ ସବୁ ହୋଇଗଲା । ଏ ଅବାଞ୍ଛିତ ପରିସ୍ଥିତି ପାଇଁ କ'ଣ ସେ ହିଁ ଦାୟୀ ? କେତେ ଅମାୟିକ ଏଇ ମଉସା, ମାଉସୀ । କେତେ ସରଳ ତାଙ୍କ ଅଲିଅଳୀ କନ୍ୟା । ମୁଁ ଗୁହିଁଥିଲେ ଅନେକ ପୂର୍ବରୁ ଅଙ୍ଗୀକାର କରି ପାରିଥା'ନ୍ତି ଅମିକୁ । ତେବେ ଏପରି ଅସାମଞ୍ଜସ୍ୟ ପରିସ୍ଥିତି ଉପୁଜିଲା କାହିଁକି ? ଏଥିପାଇଁ କ'ଣ ମୋ'ର ପଦବୀ ଦାୟୀ ? ଏଥିପାଇଁ କ'ଣ ମୋ'ର ଅଭିମାନ ଦାୟୀ ??? ଛନ୍ଦମୟୀ ଅମିତାର ଶୋଭା ଏବେ ବି ମୋ' ପ୍ରାଣ ସାଗରରେ ତରଙ୍ଗାୟିତ । ତେବେ ଏତେ ବଡ଼ ଭୁଲ ହେଲା କେମିତି ?

ଏଇ ପରି ଦ୍ୱନ୍ଦର ଦୁଇ ପ୍ରାଚୀର ମଝିରେ ଦଣ୍ଡାୟମାନ ହୋଇ ଅତୀତକୁ ରୋମନ୍ଥନ କରୁଥିଲେ ଶେଖର ଚୌଧୁରୀ । ଅଜାଣତରେ ତାଙ୍କର ହାତ ଗୁଲିଗଲା ଅମିତାର ଆରକ୍ତ ଗଣ୍ଡ ଦେଇ ବହି ଯାଉଥିବା ଦ'ଧାରେ ଲୁହ ପୋଛି ଦେବାପାଇଁ ॥

